# ଧ୍ୱଂସ-ପଥେ




ପ୍ରଣେତା ଓ ପ୍ରକାଶକ

ଶ୍ରୀ ଶ୍ରୀବତ୍ସ ଦାଶ, ବିଦ୍ୟାଲଙ୍କାର, ସାହିତ୍ୟାଗ୍ରଣୀ
ବଡ଼ାମ୍ବା



ପ୍ରଥମ ସଂସ୍କରଣ





PRINTED BY
C. S. Misra B. A.
THE AMBIKA PRESS,
Cuttack.
1939.

[redacted] ୦ । [redacted]

# ଉତ୍ସର୍ଗ-ପତ୍ର

ଯାହାଙ୍କର ସୁଧାକୋଳା କରୁଣା, ଅପ୍ରତିହତ ମହିମା ଓ ଅନୁ-
ପମ ମାତୃସୁଲଭ ବାତ୍ସଲ୍ୟଧାରାରେ ଆଜ ଅର୍ଦ୍ଧଲକ୍ଷ ବୃହ-
ଦମ୍ବା-ସନ୍ତାନ ପାଳିତ, ଯୁଗେ ଯୁଗେ ଯାହାଙ୍କର ଅଭୟ-
ଦାୟକ ମଧୁମୟ ମାତୃକୋଳର ଆଶ୍ରୟରେ ବୃହଦମ୍ବା-
ଖରେନ୍ଦ୍ର-ନୃପପରମ୍ପରା ବିଜୟ ଦୃପ୍ତ, ଅଦ୍ଭୁତ ବଳରେ
ବଳୀୟାନ୍ ଓ ଆଶୀଷଧାରାରେ ଧନ୍ୟ, ମାନ୍ୟ ଓ
ବରେଣ୍ୟ, ଯାହାଙ୍କର କଲ୍ୟାଣମୟୀ କୃପା-କଣା
ଦ୍ୱାରା ଆଜ ନୃପ-ଭ୍ରାତୃ-ଯୁଗଳ ଯଶଃପରିମଳରେ
ଦିଗଦିଗନ୍ତ ଉଦ୍‌ଭାସିତ ଓ ତଦୀୟ ପବିତ୍ର
ନାମରେ ରାଜ୍ୟର ନାମକରଣ କରିଥିଲେ,
ସେହି ଶଙ୍ଖୋପୂଲାତଟଶୋଭିନୀ, ସୁର-
ନରାର୍ଚ୍ଚିତା ଭଗବତୀବୃହଦମ୍ବା ଭଟ୍ଟାରିକା-
ଙ୍କର ଅଭୟ ପାଦପଦ୍ମରେ ମ୍ଳାନ କୁସୁମ-
କଳିକୋପମ ମୋର ଏହି କ୍ଷୁଦ୍ର ଉପ-
ହାରଟି ଶ୍ରଦ୍ଧା ଓ ଭକ୍ତିର
ସହିତ ଅର୍ପଣ କଲି ।

ବୃହଦମ୍ବା
ଶକ୍ରାପୂର୍ଣ୍ଣିମା
୧୯୩୯ ମସିହା



ପଦପଙ୍କଜାଶ୍ରିତ
କୃପାଭିଲାଷୀ
ଲେଖକ

# ଭୂମିକା

ଉତ୍କଳ-ସାହିତ୍ୟ-କ୍ଷେତ୍ରରେ ଆଜି ନାନାପ୍ରକାର ସାମାଜିକ, ଐତିହାସିକ ଉପନ୍ୟାସ ଓ ଗଳ୍ପର ଅଭାବ ନାହିଁ । ଏହି ଉପନ୍ୟାସ ଓ ଗଳ୍ପ ପୁସ୍ତକର ବହୁଳତା ଓ ଉପାଦେୟତା ଦୃଷ୍ଟିରେ ମୋର ଏହି 'ଧ୍ୱଂସ-ପଥେ' ଉପନ୍ୟାସ ପୁସ୍ତିକା ଖଣ୍ଡିକର ମୂଲ୍ୟ ଅଳ୍ପ ହେଲେ ମଧ୍ୟ ଏହା ଯେ ଆମ ଦେଶର ଇଦାନୀନ୍ତନ ଜଟିଳ ସାମାଜିକ ଚିତ୍ରର ଗୋଟାଏ କ୍ଷୀଣ ସୂଚନା ଦେବ, ଏଥିରେ ସନ୍ଦେହ ନାହିଁ । ଅକାଳରେ, ଅକର୍ମଣ୍ୟ ଅବସ୍ଥାରେ 'ବୃଦ୍ଧସ୍ୟ ତରୁଣୀ ଭାର୍ଯ୍ୟା' ଗ୍ରହଣ ଦ୍ୱାରା ଦାମ୍ପତ୍ୟ ଜୀବନରେ ଏକଆଡ଼େ ଭୀଷଣ ଦୁର୍ବଳତା, ଅସ୍ୱାସ୍ଥ୍ୟ, ମନସ୍ତାପ—ଆନ୍ୟଆଡ଼େ ଅତୃପ୍ତି, ନୈରାଶ୍ୟ ଓ ଉଚ୍ଛୃଙ୍ଖଳତା ଉତ୍ତରୋତ୍ତର ବୃଦ୍ଧି ପାଇ କେତେ ଗୃହ-ସଂସାରକୁ ଧ୍ୱଂସ କରିଅଛି, ବର୍ଣ୍ଣିତ ବିଷୟଟି ତା'ର ଗୋଟିଏ ଦୃଷ୍ଟାନ୍ତ ମାତ୍ର । ତୁଚ୍ଛ ଅର୍ଥ-ଲୋଭରେ ପିତା ମାତା କନ୍ୟାର ଭବିଷ୍ୟତ୍ ପ୍ରତି ଅନ୍ଧ ହୋଇ ପିଶାଚ ହୃଦୟ ନେଇ ଯେଉଁ ଅଶାନ୍ତି ଚିତା ଜାଳନ୍ତି, ସେଥିରେ କନ୍ୟା ଆଜୀବନ ଦଗ୍ଧ ହୁଏ । ଦେଶରେ ବାଲ୍ୟ ବିବାହ-ନିରୋଧ ବିଧବା-ବିବାହ-ପ୍ରବର୍ତ୍ତନମୂଳକ ଆନ୍ଦୋଳନ ଚଳୁଥିବା ସ୍ଥଳେ ବିବାହାତୀତ ବୟସରେ ସ୍ତ୍ରୀ ଗ୍ରହଣ ରୂପ ମାରାତ୍ମକ ବ୍ୟାଧି ଯେ ସ୍ତ୍ରୀ ପୁରୁଷଙ୍କୁ କିପରି ପଥଭ୍ରଷ୍ଟ କରୁଛି, ତାହା ପ୍ରତ୍ୟେକଙ୍କର ଭାବିବାର କଥା । ଏହି ଅପରିଣାମଦର୍ଶିତା ଯୋଗୁଁ ଗୋଟାଏ ସମୃଦ୍ଧ ପରିବାର କିପରି ଅର୍ତ୍ତନାଦ ହାକାର ଭିତରେ ଧ୍ୱଂସ ପାଇଗଲେ, ଏହି ଶୋଚନୀୟ ପରିଣାମ ଦେଖାଇବା ଲେଖାର ଉଦ୍ଦେଶ୍ୟ । ପାଠକ ପାଠିକା-ମାନଙ୍କର ଏ ଦିଗକୁ ଦୃଷ୍ଟି ଆକୃଷ୍ଟ ହୋଇପାରିଲେ ଶ୍ରମ ସାର୍ଥକ ମଣିବି ।

ବଡ଼ାମ୍ବା
ତା ୧୦।୯।୧୯୩୯

ବିନୀତ
ଲେଖକ

# ଶୁଦ୍ଧିପତ୍ର

| ପୃଷ୍ଠା | ଧାଡ଼ି | ଅଶୁଦ୍ଧି | ଶୁଦ୍ଧି |
|---|---|---|---|
| ୧ | ୩ | ଅଶାର | ଅସାର |
| ୫ | ୧୦ | ସ୍ୱସ୍ତ୍ରିକ | ସସ୍ତ୍ରୀକ |
| ୧୦ | ୨ | ତାଙ୍କୁ | ତାଙ୍କୁ |
| ୧୧ | ୧୫ ଓ ୧୬ | ସୋହାଗରେ ଅନ୍ତରାଳରେ | ସୋହାଗର ଅନ୍ତରାଳରେ |
| ୧୨ | ୩ ଓ ୪ | କାର୍ଯ୍ୟୋପଲକ୍ଷ୍ୟରେ | କାର୍ଯ୍ୟୋପଲକ୍ଷରେ |
| ୧୨ | ୯ | ବାନ୍ଧବାରେ | କାନ୍ଦବାରେ |
| ୧୨ | ୧୬ | ଉପବାଷ୍ଟ | ଉପବିଷ୍ଟ |
| ୧୨ | ୨୨ | ବସ୍ତ୍ରରେ | ବସ୍ତ୍ରରେ |
| ୧୩ | ୩ | ଯାବତୀୟ ଘଟନାସବୁ | ଯାବତୀୟ ଘଟନା |
| ୨୫ | ୧୫ | ଦେଖୁଛନ୍ତି | ଦେଖୁଛନ୍ତି |
| ୨୯ | ୧୪ | ସୁନା ବଣିଆ | ସନା ବଣିଆ |
| ୩୪ | ୧ | ଇତ୍ୟାଦି | ଇତ୍ୟାଦି |
| ୩୯ | ୪ | ଉପବିଷ୍ଟ | ଉପବିଷ୍ଟ |
| ୪୩ | ୧୫ | ଅଶ୍ୱସ୍ତ | ଅଶ୍ୱସ୍ତି |
| ୪୮ | ୮ | ହାଠାତ୍ | ହଠାତ୍ |
| ୪୯ | ୧୦ | ମାଠୁ | ମା |
| ୫୧ | ୪ | ଆନୁସଙ୍ଗିକ | ଆନୁଷଙ୍ଗିକ |
| ୫୪ | ୪ | ଉକ୍ତ | ଉକ୍ତ |
| ୫୬ | ୬ | ତ'ର | ତା'ର |
| ୫୬ | ୧୩ | କନ୍ଦର୍ପର | କନ୍ଦର୍ପ |
| ୫୮ | ୧୦ | ସଂସର ବବାଗୀ | ସଂସାର ବୈରାଗୀ |
| ୫୮ | ୧୮ | ଉତ୍ତର ଦେଇ | ଉତ୍ତର ଦେବ |

# ଧ୍ୱଂସ-ପଥେ

## —ଏକ—

ବାଦଲଭରା ଆକାଶ ତଳେ ପୃଥିବୀର ସ୍ନିଗ୍ଧଚ୍ଛାୟା, ତା' ସଙ୍ଗେ ଅପରାହ୍ଣ ସୂର୍ଯ୍ୟର କଅଁଳ ଆଲୋକଧାରାର ମଧୁର ମିଳନ । ଏହାପରେ ଯେତେବେଳେ ଶରତ୍ ପ୍ରକୃତିର ହାସ୍ୟରେଖା ସଦୃଶ ସଦ୍ୟ ଆଶାର ଧୌତ ଗୃହ, ମାର୍ଗ, ନଦୀ, କାନନରାଜିର ଉଜ୍ଜ୍ୱଳତା ଫୁଟି ଉଠିଥିଲା, ସେତିକିବେଳେ ଜଣେ ଶୁଭାଙ୍ଗୀ ଯୁବତୀ ସ୍ୱୀୟ ଗୃହର ଅଭ୍ୟନ୍ତରରେ ରହି ଗବାକ୍ଷ ନିକଟରେ ପ୍ରସାଧନ କାର୍ଯ୍ୟରେ ରତା । ଯୁବତୀ ଥିଲେ ଅତିଶୟ ସୁନ୍ଦରୀ । କାବ୍ୟ-ବର୍ଣ୍ଣିତ ମୀନାକ୍ଷନୟନ, ସୁରଙ୍ଗ ଅଧର, ଘନ ନୀଳ କେଶପାଶ, ସୁଗଠିତ ବର୍ତ୍ତୁଳ ଅଙ୍ଗ, ସର୍ବୋପରି ଉଦ୍ଦାମ ଚପଳ ଯୌବନ ଓ ଯୁବତୀ ସୁଲଭ କଟାକ୍ଷ ଛଟା ଥିଲା, ତାଙ୍କର ସୌନ୍ଦର୍ଯ୍ୟ-ସମ୍ପଦର ପ୍ରତୀକ । ଯୁବତୀ ବାଦଲଭରା ଗଗନକୁ ସତୃଷ୍ଣ ଦୃଷ୍ଟିରେ କେତେବେଳେ କେତେକ୍ଷଣଯାଏଁ ଚାହୁଁଥିଲେ, କେତେବେଳେ ବା ଅଗ୍ରଭାଗରେ ରକ୍ଷିତ ମୁକୁରଟିରେ ପ୍ରତିଫଳିତ ସ୍ୱୀୟ ଫୁଟନ୍ତ ଯୌବନର ରୂପ ସମ୍ଭାର ଦେଖି ଗର୍ବ ଓ ଆନନ୍ଦ ଅନୁଭବ କରୁଥିଲେ । ଚପଳ ଶୀତଳ ସମୀରଣ କେତେବେଳେ କେତେବେଳେ ତାଙ୍କର କୁଞ୍ଚିତ କୁନ୍ତଳର ସୀମାନ୍ତ ସ୍ପର୍ଶ କରି ସେଗୁଡ଼ିକୁ ଅସ୍ତବ୍ୟସ୍ତ କରି ଦେଉଥିଲା, ସେତେବେଳେ ସେ ସେଗୁଡ଼ିକୁ ସଜାଡ଼ିବାକୁ ଅତିଶୟ ଅଥୟ ହୋଇ ଉଠୁଥିଲେ । ଏହି ଥିଲା ତାଙ୍କର ପ୍ରସାଧନ କାର୍ଯ୍ୟର ଅବଶେଷ ।

ଯୁବତୀ ଏହିପରି ଅତୁଳ ଯୌବନର ଶୋଭା ସମ୍ପାଦନରେ ରତ ଥିଲା ବେଳେ ଦୁଇଟି ପରିଚିତ ହସ୍ତ ପଶ୍ଚାଦ୍ ଭାଗରୁ ତାଙ୍କର ଅଲକ୍ଷିତରେ ନୟନ ଦୁଇଟିକୁ ଆବୃତ କଲା । ଚତୁରୀ ଲଜ୍ଜାବୋଳା ହାସ୍ୟଟିକୁ ଅଧର କୋଣରେ ଲୁଚାଇ ଦେଇ ନେତ୍ରଯୁଗଳକୁ ମୁକ୍ତ ନ କରୁଣୁ ନିଜେ ଆବଦ୍ଧ ରହିଲେ ନିବିଡ଼ ବାହୁପାଶ ମଧ୍ୟରେ ଆଉ ତାଙ୍କର ଗଣ୍ଡ-ଦେଶରେ ଲାଗି ରହିଲା ଗୋଟିଏ ଚୁମ୍ବନରେଖା ।

ଚତୁରୀ କାମନା ମେଣ୍ଟନର ଉପଯୁକ୍ତ ଅବସର ବୁଝି ଅଭିମାନ ମିଶା କଣ୍ଠରେ କହିଲେ, "ହଁ, ଉଠ, ଉଠ, ରଖିଦିଅ ଏ ତୁଚ୍ଛା ସୁଆଗ, ମଣିଷ ଦିନ ରାତି ଏତେ ଜଳି ପୋଡ଼ି ମରୁଛି, ଶହେଥର କହିଲେ ମଧ୍ୟ କାନରେ ସେକଥା ବାଜୁନାହିଁ, ତୁଚ୍ଛାକୁ ସ୍ନେହ ଆଦର ଅଜାଡ଼ିହୋଇ ପଡ଼ୁଛି ।"

ଆଗନ୍ତୁକଙ୍କ ଉନ୍ମାଦନା ଥମ୍ଭିଗଲା, ବାହୁପାଶରୁ ଯୁବତୀଙ୍କୁ ମୁକ୍ତ କରି କହିଲେ, "ଶଶି, କିଏ ତୁମର କ'ଣ କରିଛି ଯେ, ତୁମର ଏତେ ଅଭିଯୋଗ ? ମୋତେ ବା କ'ଣ କେଉଁଦିନ କହିଲ ଯେ ମୁଁ ନକଲି ?"

ଝରଝରରେ ନାରୀ-ନେତ୍ରରୁ କୃତ୍ରିମ ଅଶ୍ରୁବିନ୍ଦୁ ଗୁଡ଼ିକ ଝରିପଡ଼ିଲା, ଅଭିମାନ ଶତଗୁଣିତ ହେଲା, ସେ ହେଲେ ପୁଣି ମିଥ୍ୟାବାଦିନୀ ! ଅଧର କମ୍ପିତ ହେଲା, କହିଲେ, "ମୁଁ ମିଥ୍ୟାବାଦିନୀ ହେଲେ ହେଲି, ମୋ କଥାଗୁଡ଼ାକ ତ ମିଛ, ତୁମକୁ ଆଉ କହିବି କ'ଣ ? "

ଏତିକରେ ଆଗନ୍ତୁକଙ୍କର ଧୈର୍ଯ୍ୟ-ବନ୍ଧ ଭାଙ୍ଗିପଡ଼ିଲା, ସେ ବିଚଳିତ ହୋଇ ପଡ଼ିଲେ, ଅଭିମାନ ଖଣ୍ଡନ କରିବାକୁ ଯାଇ କହିଲେ, "କାହିଁକି ତୁଚ୍ଛାଟାରେ କାନ୍ଦୁଛ କହିଲ; କିଏ ତମର କ'ଣ କରିଛି; କହ, ଶୁଣିଅଛି ସତ କହ ?"

ଅନେକ କାକୁତିପୂର୍ଣ୍ଣ ଅନୁରୋଧ ପରେ ଯୁବତୀ ଛଳନାଶ୍ରୁ ପୋଛୁ ପୋଛୁ କହିଲେ, "ହିଁ କିଏ, ତମେ କ'ଣ ଜାଣ ନାହିଁ ? ତମର ଗେଲ୍ହା

ଝିଅ-ବାଣୀ, ବାଣୀ ତା' ଯୋଗୁଁ ମୁଁ ଆଉ ଏ ଘରେ ଚଳିପାରିବ ନାହିଁ, ନା କାହାକୁ ମୁହଁ ଦେଖାଇପାରୁ ନାହିଁ, ଆଜ ସକାଳେ ଏଡ଼େ ସୁନ୍ଦର କାଚ ଗ୍ଲାସ୍‌ଟା ପାଣି ପିଉ ପିଉ ପକାଇଦେଲା, ମାଟିରେ ପଡ଼ିଲା ବୋଲି, ନୋହିଲେ ଏକାବେଳକେ ଚୂନା ହୋଇ ଯାଇଥାନ୍ତା, ମୁଁ ଡରେଇ ଦି' ପଦ କହିଲି ବୋଲି ଏ ଛୁଆ ଖଣ୍ଡକ "ମା, ମାଇଲା" ବୋଲି ଗାଁଟା ଯାକ ହଟା କରିଛି, ମୋତେ ପଡ଼ିଶାଲୋକେ ଆସି ପରଚଉଛନ୍ତି, "ସାଆନ୍ତାଣି, ପିଲାଟା'ଠେଇଁ ଆଉ ଜୀବନ ଅଛି ଯେ, ତାକୁ ମାରୁଛ, ଝୁରି ଝୁରି କଣ୍ଟା ଦି' ଖଣ୍ଡ ତ ରହିଲାଣି" ମଲା, ଏ ଛତରଖାଇ ଗୁଡ଼ାକ, ତ ଆଉ ବୁଝିବେ ନାହିଁ, ମୁଁ ତାକୁ ଜନ୍ମକଲା ଝିଅଠାରୁ ଆହୁରି ବଡ଼ କରିଛି, ଭଲ ମନ୍ଦରେ'ତ ପଦେ କହିବି ନାହିଁ, ହେବ କମିତି ? ଏ ଛୁଆ ଟିକିକ କମ୍ ନୁହେ, ଆପଣା ସୁନାତ ଭେଣ୍ଡି, କାହାକୁ କ'ଣ କହିବ, ମୋ ନାଁରେ ସଦାବେଳେ ଯାହାଯାକ କହି ବୁଲୁଛି, 'ମା' ମାରୁଛି, 'ମା' ମାରୁଛି । ମୁଁ କେତେ ଆଉ ସହିବି, ତମେ ନ ବୁଝିଲେ ଏ ଘରେ ଆଉ ଚଳି ପାରିବ ନାହିଁ । ଏହା କହି କାଇଁ କାଇଁ ହୋଇ କାନ୍ଦି ଉଠିଲେ ।

ଅଗନ୍ତୁକଙ୍କ ମୁଖ ଆରକ୍ତବର୍ଣ୍ଣ ଧାରଣ କଲା, ସେ କ୍ରୋଧରେ ଗର୍ଜି ଉଠି କହିଲେ, "ଏଡ଼େ ଟିକିଏ ଛୁଆ, ଏତେ ନାଟଲଗାଇଛି, ଆଜି ସେ ବଦମାସ୍ ପିଲାକୁ ଠିକ୍ କରି ଦେଉଛି" ଏତିକି କହି ନସାରୁଣୁଁ ଗୋଟିଏ ପଞ୍ଚମ ବର୍ଷ ବୟସ୍କା, ମଳିନ ବେଶା କୃଶାଙ୍ଗୀ ବାଳିକା ଅକସ୍ମାତ୍ ସେହି ପ୍ରକୋଷ୍ଠ ମଧ୍ୟରେ ପ୍ରବେଶ କଲା, ତାର ଶଙ୍କିତ ଲଳିତ କଣ୍ଠରୁ ବାହାରି ପଡ଼ିଲା, "ବୋଉ, ଭରି ଭୋକ କଲାଣି, ଭାତ ଦିଅ, ଖାଇବି, ପୂଜାରୀଙ୍କୁ ବହୁତ ଖୋଜିଲିଣି ପାଉ ନାହିଁ, ନୋହିଲେ ଭୂଜା ଗଣ୍ଡିଏ ଦିଅ, ଖାଇ ଶୋଇବି । ବାପା, ବାପା ତମେ କୁଆଡ଼େ ଯାଇଥିଲକି, ମୋତେ ମିଠେଇ ଦେବ ନାହିଁ ?" ଏହା ବୋଲି ଅଗନ୍ତୁକଙ୍କ କୋଳରେ ଅଉଜି ପଡ଼ିଲା, ଅଗନ୍ତୁକଙ୍କ ସବୁ କ୍ରୋଧ ସେହି ସରଳ ସୁବୋଧ ଭାଷାର

ଉତ୍ତାଲରେ କାହିଁ ମିଳାଇ ଗଲା । 'ହୁଁ ଆଣିବା କହୁ' ଆଗନ୍ତୁକ ଅଯତ୍ନ-ବର୍ଦ୍ଧିତା ବାଳିକାଟିକି ଆଦରରେ କୋଳରେ ବସାଇ ପକାଇଲେ । ମାନ୍ଦ ରମଣୀର କ୍ରୋଧାଗ୍ନି ଏଥିରେ ଯେପରି ଜଳି ଉଠିଲା । ମୁହଁ ଫଣ ଫଣ କରି "ଗେଲବସରୀ ଝିଅକୁ ଧରିଥାଅ" ବୋଲି କହି ସଙ୍ଗେ ସଙ୍ଗେ ସେ ପ୍ରକୋଷ୍ଠ ତ୍ୟାଗ କଲେ ।

## —ଦୁଇ—

ଇତିହାସ ପ୍ରସିଦ୍ଧ ସୁବର୍ଣ୍ଣପୁର ଗ୍ରାମ ଚନ୍ଦ୍ରୋପୃଲାର ଠିକ୍ ଓଗର-ଦେଶରେ ଅବସ୍ଥିତ । କେଶରୀବଂଶୀୟ ଶେଷ ରାଜା ସୁବର୍ଣ୍ଣକେଶରୀ ଏହି ପୁଣ୍ୟ ସ୍ଥଳରେ ତପସ୍ୟା କରି ସ୍ୱୀୟ ନାମର ଗୋଟିଏ ଅମର ସ୍ମୃତି ରଖିବା ପାଇଁ ଏହି ଗ୍ରାମଟି ବସାଇଥିଲେ । ଗ୍ରାମଟି ସେତେ ବଡ଼ ନ ହେଲେ ମଧ୍ୟ ପ୍ରାକୃତିକ ସୌନ୍ଦର୍ଯ୍ୟରେ ଏହା ଶୀର୍ଷ ସ୍ଥାନ ଅଧିକାର କରି ପାରିଛି । ଗ୍ରାମଟି ବାଙ୍କିର ଅନ୍ତର୍ଭୁକ୍ତ ହେଲେ ହେଁ ମହାନଦୀ ଦ୍ୱାରା ଏହା ସେଥିରୁ ବିଚ୍ଛିନ୍ନ ହୋଇ ଯାଇଅଛି । ସ୍ଥାନଟି ବିଜନ ପଲ୍ଲୀ ପ୍ରକୃତି ମଧ୍ୟରେ ପ୍ରଶାନ୍ତ ଶୋଭା ଧାରଣ କରି ତପସ୍ୟାର ଉପଯୁକ୍ତ ସାଧନ କ୍ଷେତ୍ର ହୋଇ ପାରିଛି । ଏକ ଦିଗରେ ବଡ଼ାମ୍ବା, ଢେଙ୍କାନାଳ, ଆଠଗଡ଼ର ସୁନୀଳ ଅସ୍ପଷ୍ଟ ଶୈଳରେଖା; ଅନ୍ୟ ଦିଗରେ ମହାନଦୀର କୁଳୁ କୁଳୁ ଧ୍ୱନି; ଶ୍ୟାମାୟମାନ ଶସ୍ୟ କ୍ଷେତ୍ର ପ୍ରଭୃତିର ଦୃଶ୍ୟ ଗୁଡ଼ିକ ରହି ଦର୍ଶକକୁ ଭାବାବିଷ୍ଟ କରାଏ । ଏହି ଐତିହାସିକ ଗ୍ରାମର ମଧ୍ୟଭାଗରେ କରଣକୁଳ ତିଳକ ଜମିଦାର ସୁରେଶଚନ୍ଦ୍ର ପଟ୍ଟନାୟକଙ୍କ ଘର । ଗାଁ ମଧ୍ୟରେ ଏହି ଘରଟିକୁ ଦେଖିଲେ ଯେ କେହି ବଡ଼ ଲୋକଙ୍କ ଘର ବୋଲି କହିବ । ଘରଗୁଡ଼ିକ ଯେପରି ଦୀର୍ଘ ସେହିପରି ଉଚ୍ଚ । ଖଞ୍ଜା ଅଟୁ ହେଲେ ମଧ୍ୟ କକ୍ଷ ଗୁଡ଼ିକ ଧାଡ଼ି ଧାଡ଼ି ହୋଇ ଅବସ୍ଥିତ । କକ୍ଷ ଗୁଡ଼ିକ ପରିଷ୍କୃତ, ସୁନ୍ଦର ଓ ସୁସଜ୍ଜିତ । ଆଧୁନିକ ରୁଚିକୁ ନେଇ ଏହା ଗଠିତ ହୋଇଥିବା ପରି ବୋଧହୁଏ ।

ସୁରେଶବାବୁଙ୍କ ବଂଶର ବହୁଦିନରୁ ଖ୍ୟାତି ଅଛି । ଗ୍ରାମଅଞ୍ଚଳର ଲୋକେ ତାଙ୍କୁ ଖାନଦାନ ଘର ବୋଲି ଜାଣନ୍ତି । ଖମାର, ଅମାର, ଫୁଲବାରି, ଗୁହଳ, ପୋଖରୀ, ପରିବାରୀ କିଛି ଅଭାବ ନାହିଁ । ସୁରେଶ ବାବୁ ପୁରୁଷାନୁକ୍ରମିକ ଏହି ଜମିଦାରୀ ଭୋଗକରି ଆସୁଅଛନ୍ତି । ବିପୁଳ ଜମିଦାରୀ, ବିଶାଳ ସମ୍ପତ୍ତି, ଯାହା କହନ୍ତି ଧନ ଧାନ୍ୟ ଗୋପଲକ୍ଷ୍ମୀରେ ସୁରେଶବାବୁଙ୍କ ଭଣ୍ଡାର ପୂର୍ଣ୍ଣ, ତୋଟା ବଗିଚାର ମଧ୍ୟ ଅଭାବ ନାହିଁ । ଘରର ପଛକୁ ଲାଗି ଯାଇ, ଫୁଲ, ମଲ୍ଲୀ, ଗୋଲାପ ଓ ନାନାଜାତି ଫଳ-ବାନ୍ ବୃକ୍ଷର ଗୋଟିଏ ସୁନ୍ଦର ବଗିଚା । ଏହି ବଗିଚାରେ ଗୋଟିଏ ପୋଖରୀ, କେତୋଟି କୂଅ ମଧ୍ୟ ଅଛି । ଗୋଟିଏ ସୁନ୍ଦର ମଣ୍ଡପ ବଗିଚାର ମଧ୍ୟଭାଗରେ ନିର୍ମିତ ହୋଇଅଛି, ସୁରେଶବାବୁ ସନ୍ଧ୍ୟା ସମୟରେ ସସ୍ତ୍ରୀକ କେତେବେଳେ ବା ପୁତ୍ର କନ୍ୟାଙ୍କ ସହ ଏହି ବଗିଚାକୁ ବୁଲି ବାହାରନ୍ତି । ସୁତରାଂ ଏହି ନୀରବ ପଲ୍ଲୀ ପ୍ରକୃତିର ଶାନ୍ତିମୟ କୋଳରେ ସୁରେଶବାବୁ ବିମଳ ଆନନ୍ଦ ଓ ଅଭୁଟ ଶାନ୍ତି ଉପଭୋଗ କରି ଜୀବନ କଟାଉ ଥିଲେ ।

ସୁରେଶବାବୁଙ୍କର ନିଜ ପରିବାର ଥିଲେ ମୋଟରେ ଚାରିଜଣ । ନିଜେ, ପୁତ୍ରକନ୍ୟା ଦିଓଟି ଓ ନୂତନ ବିବାହିତା ପତ୍ନୀ ଶଶିପ୍ରଭା । ଏହି ପୁତ୍ରକନ୍ୟା ଦିଓଟି ସୁରେଶବାବୁଙ୍କ ପୂର୍ବ ସ୍ତ୍ରୀଙ୍କର । ଆଜକୁ ଦୁଇବର୍ଷ ହୋଇଗଲାଣି । ଏହି ନିରବଚ୍ଛିନ୍ନ ସୁଖ ପ୍ରବାହ ଭିତରେ ସୁରେଶବାବୁଙ୍କୁ ଗୋଟିଏ ଦୁଃଖର ଝଡ଼ ମଧ୍ୟ ଦେଇ ଯିବାକୁ ପଡ଼ିଥିଲା । ତାହା ହେଉଛି ନିଜର ପ୍ରାଣସମା ପ୍ରିୟତମା ଶାନ୍ତାଙ୍କର ବିୟୋଗ । ନିୟତିର ନିୟମ କିଏ ଲଙ୍ଘନ କରିପାରିବ ? ଦାରୁଣ ନିୟତି ତାଙ୍କର ଶାନ୍ତିମୟ ଗୃହ ସଂସାରକୁ ଛାରଖାର କରିଦେଲା । ଶାନ୍ତା ଭୀଷଣ ଜ୍ୱରରେ ପୀଡ଼ିତା ହୋଇ ଅକାଳରେ ଇହଧାମ ତ୍ୟାଗ କଲେ—ଦୁଇଟି ସନ୍ତାନଙ୍କୁ ମାତୃହୀନା କରି ସେ ଶେଷ ନିଶ୍ୱାସ ଛାଡ଼ିବା ପୂର୍ବରୁ ସ୍ୱାମୀଙ୍କ କୋଳରେ ମୁଣ୍ଡରଖି ଏତିକି ପ୍ରାର୍ଥନା କରି ଯାଇଥିଲେ, "ମୁଁ ଯାଉଛି, ତମ ଆଗରେ ହାତ ସିନ୍ଦୂର ନେଇ, ଏହି

ମୋର ଯଥେଷ୍ଟ, ମୋ ପିଲା ଦୁଇଟି ଲାଗିଲେ । ପଦ୍ମ ଟି ବଡ଼ ହୋଇ ଯାଇଛୁ; ତା'ର ବୁଦ୍ଧି ହେଲାଣି, ମାତ୍ର ବାଣାଟି କହାଁତ ପିଲା; ତାକୁ ଅନାଦର କରିବ ନାହିଁଟି ? ମା' ଛେଉଣ୍ଡ ପିଲାଗୁଡ଼ିକୁ ତମେ ନ ଦେଖିଲେ କିଏ ଆଉ ଦେଖିବ, କାଲି ତମେ ବିବାହ କରି ସ୍ତ୍ରୀ ଆଣିବ, ଘରଦ୍ୱାର କରିବ, ମୋ ପିଲାଙ୍କୁ ତ ଆଉ ମା' ମିଳିବ ନାହିଁ ?" ଏହା କହୁଁ କହୁଁ ତାଙ୍କର ଦୁଇଗଣ୍ଡ ଦେଇ ଦୁଇଟି ଅଶ୍ରୁଧାରା ବହିଗଲା । ଅଧର ଟିକିଏ ଥରି ଉଠିଲା । ରହୁଁ ରହୁଁ ସବୁ ଶେଷ; ଗୁଣବତୀ ଶାନ୍ତଙ୍କର ଗୁଣ ମନେ ପକାଇ ପକ୍ଷୀ, ପଥ, ଘାଟ, ତରୁଲତା କାନ୍ଦି ଉଠିଲା । ମୃତ୍ୟୁ ପୂର୍ବରୁ ଦୁଃଖ ଜର୍ଜର ହୃଦୟ ଘେନ ସଜଳ ନୟନରେ ସୁରେଶବାବୁ ପତ୍ନୀଙ୍କୁ ଆଶ୍ୱାସନା ଦେଉଥିଲେ, ମାତ୍ର ତାଙ୍କର ଚକ୍ଷୁ ଚିରଦିନ ପାଇଁ ମୁଦ୍ରିତ ହେବାର ଦେଖି ସୁରେଶବାବୁଙ୍କ ହୃଦୟ ଭାଙ୍ଗି ପଡ଼ିଲା । ସଞ୍ଚିତ କୋହ ଶତଗୁଣିତ ହେଲା । ତାଙ୍କୁ ଚାରିଆଡ଼ ଅନ୍ଧକାରମୟ ଦେଖାଗଲା । ଘର-ଦ୍ୱାର ଚାରିଆଡ଼ ଯୁଆଡ଼େ ଚାହିଁଲେ, ସବୁ ଶୂନ୍ୟ ହାହାକାରପୂର୍ଣ୍ଣ ସେ ବୋଧ କଲେ । ସଂସାରରେ ଭାଇ, ବନ୍ଧୁ ସ୍ତ୍ରୀ, ପୁତ୍ର ସବୁ ଏହିପରି କ୍ଷଣସ୍ଥାୟୀ କେହି ମମତା ବନ୍ଧନର ଅଧୀନ ନୁହନ୍ତି—ସବୁ ଧ୍ୱଂସଶୀଳ । କଠୋର ବୈରାଗ୍ୟ ତାଙ୍କର ପ୍ରାଣକୁ ମନ୍ଥନ କଲା । କ'ଣ କରିବେ, ନିୟତି ଉପରେ ହାତ କା'ର ଅଛି ? କପାଳକୁ ଠୁଙ୍କି ସ୍ତ୍ରୀଙ୍କର ଯଥାବିଧି ଶୁଦ୍ଧି-କ୍ରିୟା ସଂପାଦନ କଲେ ଏବଂ ପ୍ରତିଜ୍ଞା କଲେ ଆଉ ବିବାହ କରି ଏ ସଂସାର ଜଞ୍ଜାଳରେ ଘାଣ୍ଟି ହେବେ ନାହିଁ ।

## —ତିନି—

କାଳର ଅସୀମ ଶକ୍ତି ଦ୍ୱାରା ମାନବର ବଳ, କ୍ଷମତା ସବୁ ପରାହତ । ସେ ମାନବର ସବୁ ଦୁଃଖ ଶୋକ କେଉଁ ଅଜଣା ରାଜ୍ୟକୁ ଭସାଇ ନିଏ । ଦୁଃଖ ସ୍ଥାନରେ ସୁଖ; ଦାରିଦ୍ର୍ୟ, ନିରାନନ୍ଦ, ନିରାହତା ସ୍ଥାନରେ ଅତୁଳ ଐଶ୍ୱର୍ଯ୍ୟ, ନିର୍ମଳ ପ୍ରେମ-ଆନନ୍ଦ, ବଳିଷ୍ଠ ମାନବିକତା

ଓ ପ୍ରଭାତର ଆବେଶ କରେ । ସମୟର ସେହି ସମ୍ମୋହନୀ ଶକ୍ତିର ପ୍ରଭାବରେ ଆଜ ସୁରେଶବାବୁଙ୍କ ଗୃହ-ସଂସାର ପୁଣି ହସି ଉଠିଛି । ତାଙ୍କର ବ୍ୟଥା ଭରା ହୃଦୟରେ ଶାନ୍ତି ଆଶ୍ୱାସନା ଫେରି ଆସିଛି, ଏହିସବୁ କରିପାରିଛନ୍ତି ତାଙ୍କର ପ୍ରାଣପ୍ରିୟା ପ୍ରେୟସୀ ଶଶିପ୍ରଭା । ତାଙ୍କର ପ୍ରୌଢ଼ ହୃଦୟରେ ଯୌବନର ବଳ, ପ୍ରେମ, ସରସତା ଫୁଟାଇ ପାରିଛି କେବଳ ଶଶୀପ୍ରଭାଙ୍କର ଅତୁଳ ରୂପବୈଭବ । ବାସ୍ତବରେ ସୁରେଶବାବୁଙ୍କର ମନ ସଂସାର ପ୍ରତି ବିତୃଷ୍ଣ ହୋଇ ଯାଇଥିଲା । ତାଙ୍କର ବିବାହ କରିବାକୁ ମନରେ ଆବେଗ ମଧ୍ୟ ନ ଥିଲା । ବିଶେଷତଃ ଏ ବୟସରେ ପୁତ୍ର, କନ୍ୟା ଦାସ, ଦାସୀ ଧନମାନ ଯାହା ସଂସାରୀ ପକ୍ଷରେ ଦରକାର, ସବୁଥିରେ ଥିଲେ ସେ ମାଲିକ । ମାନବର ପ୍ରକୃତି ଅତି-ବିଚିତ୍ର, କ୍ଷଣକରେ ତାହା ବଦଳିଯାଏ । ଯେଉଁ ସୁରେଶବାବୁ ବିବାହ କରିବେ ନାହିଁ ବୋଲି ଏତେ ଦୃଢ଼ପ୍ରତିଜ୍ଞ ଥିଲେ, ଶାନ୍ତିଙ୍କ ମୃତ୍ୟୁର ଏକମାସ ଅତୀତ ନ ହେଉଣୁ ତାଙ୍କର ଦ୍ୱିତୀୟ ବିବାହ ପାଇଁ କନ୍ୟା ଖୋଜା ପଡ଼ିଲା । ନାନା ସ୍ଥାନକୁ ଲୋକ ପଠାଗଲେ । ଏ ବୟସରେ ତାଙ୍କୁ କନ୍ୟା ମିଳିବା ଟିକିଏ କଷ୍ଟକର ହେଲା ।

ମାତ୍ର ମାନବ ଅର୍ଥର ଦାସ । ଶେଷରେ ପାଞ୍ଚଶତ ଟଙ୍କାରେ ଗୋଟିଏ କନ୍ୟା କିଣାଗଲା । କନ୍ୟାପିତା ସୁରେନ୍ଦ୍ରଦାସଙ୍କ ଘର ସୁନ୍ଦରପୁର ଗ୍ରାମରେ । ସୁରେନ୍ଦ୍ରଦାସଙ୍କର ସେତେ କିଛି ଅସ୍ଥା ବାଡ଼ି ନ ଥିଲା । କପି ଦୁଇମାଣରୁ ଯାହା କିଛି ଉତ୍ପନ୍ନ ହୁଏ, ସେଥିରେ ତିନୀଜଣ ପରିବାର ବିଶିଷ୍ଟ ତାଙ୍କର କ୍ଷୁଦ୍ର ଗୃହସଂସାରଟି ଛ'ମାସ ଯେ କୌଣସି ପ୍ରକାରେ ଚଳିଯାଏ । ବାକି ଛ'ମାସ ମଗା ଯାଚି ଧାର ଉଧାର କରି ଚଳନ୍ତି । ଯେତେବେଳେ ଜମିଦାରଙ୍କ ଲୋକ କନ୍ୟା ପ୍ରସଙ୍ଗ ନେଇ ସୁରେନ୍ଦ୍ରଦାସଙ୍କ ଦ୍ୱାରରେ ଉପସ୍ଥିତ ହେଲେ ଓ ସେ ତାହାଠାରୁ ସମସ୍ତ ଘଟନା ଶୁଣିଲେ, ସେତେବେଳେ ତାଙ୍କ ଛାତି ଆନନ୍ଦରେ ଫୁଲି

ଉଠିଲା । ସେ ଭାବିଲେ ଭପାଳରେ ଥିଲେ ଏପରି ସୁଯୋଗ ମିଳେ । ଏକେ ତ ବିପୁଳ ଅର୍ଥଲାଭ, ଦ୍ୱିତୀୟରେ ଏତେ ବଡ଼ ଜମିଦାରଙ୍କସହ ବନ୍ଧୁତା । ସେ ପ୍ରଥମେ କୃତ୍ରିମ ଦୁଃଖ ପ୍ରକାଶ କରି ସୁରେଶବାବୁଙ୍କୁ ଏ ବୟସରେ କନ୍ୟାଦାନ କରିବାକୁ କୁଣ୍ଠିତ ହେଲେ । ମାତ୍ର ତାଙ୍କର ଭିତର ଉଦ୍ଦେଶ୍ୟ ଥିଲା, ଏପରି ଅସ୍ୱୀକାର କଲେ, ସେ ବେଶୀ ଟଙ୍କା ଯାଚିବେ । ଉଦ୍ଦେଶ୍ୟ ମଧ ସିଦ୍ଧ ହେଲା । ମଧ୍ୟସ୍ଥଙ୍କ ଅତିଶୟ ଅନୁରୋଧ, ସୁରେଶବାବୁଙ୍କ ଗୁଣ, ବନ୍ଧୁତ୍ୱର ମହତ୍ତ୍ୱ ପ୍ରଭୃତି ଶୁଣି ବିଶେଷତଃ ଟଙ୍କାର ପ୍ରଲୋଭନ ଏଡ଼ିନ ପାରି ସୁରେନ୍ଦ୍ରଦାସ ରାଜିହେଲେ ଏବଂ ସାତ'ଶ ଟଙ୍କା ଦାବୀ କରି ବସିଲେ । ଶେଷରେ କନ୍ୟାର ମୂଲ୍ୟ ତୁଟିଲା ପାଞ୍ଚଶତ ମୁଦ୍ରା ।

କରଣଘର ବିଶେଷତଃ ଜମିଦାରଙ୍କ ବିବାହ । ଗୃହଅଢ଼େ କାର୍ଯ୍ୟର ଆଡ଼ମ୍ବର ଲାଗିଗଲା । କେହି ଜମିଦାରଙ୍କୁ ଏ ବୟସରେ ବିବାହ ପାଇଁ ନିନ୍ଦା କଲେ, କେହି ବା ସମର୍ଥନ କଲେ । ଶୁଭ ତିଥିରେ ମହାସମାରୋହରେ ବିବାହ କାର୍ଯ୍ୟ ସଂପନ୍ନ ହେଲା । ଶାନ୍ତିଙ୍କର ସ୍ମୃତି ଅଳ୍ପେ ଅଳ୍ପେ ଚିତ୍ତପଟରୁ ଲିଭିଯିବାକୁ ଲାଗିଲା । ନୂତନ ପରିଣିତା ପତ୍ନୀ ଶଶିପ୍ରଭାଙ୍କ ସୌନ୍ଦର୍ଯ୍ୟ ଉପଭୋଗରୁ ମୋହ ତାଙ୍କୁ ଅନ୍ଧ କରି ଦେଇଥିଲା । ପତ୍ନୀଙ୍କ ମନୋରଞ୍ଜନ ପାଇଁ ନିଜେ ବେଶ ଭୂଷାରେ ସାଜି ହେବାଠାରୁ ପତ୍ନୀଙ୍କୁ ସଜାଇବା ପର୍ଯ୍ୟନ୍ତ ତାଙ୍କର ଯେପରି ଥିଲା ପ୍ରଧାନ କର୍ତ୍ତବ୍ୟ । ସେଥିପାଇଁ ତାଙ୍କୁ ଅଜସ୍ର ଅର୍ଥବ୍ୟୟ କରି ନୂତନ ନୂତନ ଅଳଙ୍କାର ଗଢ଼ାଇବାକୁ ଓ ପ୍ରୀତି ବୋଳା ଗୃହ ପ୍ରୟୋଗ, ପ୍ରିୟତମାଙ୍କର ଆଦେଶ ପାଳନ ଦୈନନ୍ଦିନ କରିବାକୁ ପଡୁଥିଲା ।

ଶଶିପ୍ରଭା ଥିଲେ ଅତି ସୁନ୍ଦରୀ, ଗୋବରଗଦାର କଇଁଫୁଲଟି ପରି ଦରିଦ୍ର ସୁରେନ୍ଦ୍ରଙ୍କ କୂଳର ଏକମାତ୍ର ଅପତ୍ୟ । ଯୌବନର ଲାବଣ୍ୟ, ଉଜ୍ଜ୍ୱଳ ଅଙ୍ଗ ଗୁଡ଼ିକରେ ଫୁଟି ତାଙ୍କର ସ୍ୱାଭାବିକ ସୌନ୍ଦର୍ଯ୍ୟକୁ

ଷରେ ଓ ଅନୁପମ କରିଥିଲା । ସେ ଥିଲେ ସୁରେଶବାବୁଙ୍କର ଏକମାତ୍ର ପ୍ରେମର ପ୍ରତିମା ଓ ଜୀବନର ଆଶା ଭରସା । ସୁରେଶବାବୁ ତାଙ୍କର ସୋହାଗ-ଧାରରେ ନିଜକୁ ସର୍ବଦା ବୁଡ଼ାଇ ରଖି ଜୀବନକୁ କୃତାର୍ଥ ମଣୁଥିଲେ, ମାତ୍ର ଶଶିପ୍ରଭାଙ୍କ ଏହି ଅତୁଳ ରୂପରାଶିର ଅନ୍ତରାଳରେ ପ୍ରଚ୍ଛନ୍ନ ଥିଲା ଗୋଟାଏ ଉତ୍କଟ ଈର୍ଷା, ଘୃଣା, ଯୌବନର ଗର୍ବ ଓ ଅତୃପ୍ତି ଅସନ୍ତୋଷର ବହ୍ନି ଯେପରି ଅନ୍ତରର ବାସନା-ତୁଷ ଭିତରେ ଦିନୁଦିନ ପ୍ରଧୂମିତ ହେଉଥିଲା । ବିଶେଷତଃ ସପତ୍ନୀଙ୍କ ପୁତ୍ର କନ୍ୟା ପଦ୍ମ ଓ ବୀଣା ତାଙ୍କର ଜୀବନ ପଥର ଥିଲେ ମହାକଣ୍ଟକ । ଏ ଦୁହିଁଙ୍କୁ ଯେ କୌଣସି ପ୍ରକାର ଅନ୍ତର କରିବା ତାଙ୍କର ଥିଲା ଆନ୍ତରିକ ବ୍ରତ । ସେଥିପାଇଁ ସେଦିନ ଯେତେବେଳେ ସୁରେଶବାବୁ ପ୍ରିୟାଧନରତା ଶଶିପ୍ରଭାଙ୍କ ଅତୁଳ ରୂପରାଶି ପ୍ରଭାରେ ଆଲୋକିତ ପ୍ରକୋଷ୍ଠ ମଧ୍ୟରେ ପ୍ରବେଶ କରି ତାଙ୍କର ନଗ୍ନ-ସୌନ୍ଦର୍ଯ୍ୟ ଅବଲୋକନ କଲେ ଓ ପ୍ରାଣରେ ସରସ ମାଦକତା ଢ଼ାଳିଦେଲେ, ସେତିକିବେଳେ ଉପଯୁକ୍ତ ଅବସର ବୁଝି ଶଶିପ୍ରଭା ଜିଦ୍ ଧରି ବସିଲେ ବୀଣାର ଦଣ୍ଡବିଧାନ ପାଇଁ । ମାତ୍ର ସୁରେଶବାବୁ ସ୍ତ୍ରୀଙ୍କ ଶେଷ ବାଣୀ ଭୁଲି ନ ଥିଲେ । ପୁଣି ଅଭିଯୋଗ ଶେଷରେ ଯେତେବେଳେ ବୀଣା ଦୌଡ଼ି ଆସି ତା'ର ସରଳ ଚପଳ ଭାଷାରେ ସମ୍ବୋଧନ କରି ତାଙ୍କର କୋଳରେ ଆଉଜି ପଡ଼ିଲା, ସେତେ-ବେଳେ ତାଙ୍କ ମୁଖରୁ ଆଉ କଥାଟିଏ ସୁଦ୍ଧା ବାହାରିଲା ନାହିଁ । ସବୁ ରାଗ; ସବୁ ପ୍ରତିଜ୍ଞା କାହିଁ ମିଳାଇଗଲା । ମାତ୍ର ଶଶୀପ୍ରଭାଙ୍କ କୋଧ ଅସନ୍ତୋଷ ବଢ଼ିବାର ଏହା ଅନ୍ୟତମ କାରଣ ହେଲା ।

ଏହାପରେ ସୁରେଶବାବୁଙ୍କୁ ସରଳ ପ୍ରେମ ଅର୍ପିଯିବା ଅନାଦର ପ୍ରତିଦାନରେ କ୍ରମେ ଜଟିଳ ଈର୍ଷା, ନୈରାଶ୍ୟ ଓ ଅସନ୍ତୋଷ ଉପଭୋଗ କରି ଜୀବନ କଟାଇବାକୁ ପଡ଼ୁଥିଲା ।



## —ଗ୍ୱରି—

କୁଆଁର ପୁନେଇ ଜହ୍ନ ସ୍ନିଗ୍ଧ କିରଣବୋଳା ଗୋଟାଏ ବଡ଼ ରୁପାର ଥାଳୀପରି ଆକାଶର ଗୋଟାଏ କୋଣରୁ ଉଠିଆସୁଛି । ତାଙ୍କୁ ଦେଖି ବାଳ, ବୃଦ୍ଧ, ସ୍ତ୍ରୀ ପୁରୁଷ ଏ ଉତ୍ସବ ଦିନଟାରେ ବେଶୀ ଆନନ୍ଦରେ ମାତିଥିଲେ । ପିଲାଗୁଡ଼ାକ ଦଳ ଦଳ ହୋଇ ନୂଆ ଲୁଗାପିନ୍ଧି ବୁଲିବାରେ ବ୍ୟସ୍ତ । କୁମାରୀମାନେ ନାନାପ୍ରକାର ଗୀତ ଗାଇ ସାହି ସାହି, ଘର ଘର ବୁଲୁଛନ୍ତି । ସମୁଦାୟ ସ୍ୱର୍ଣ୍ଣପୁର ଗାଁଟା ଆନନ୍ଦ ଉତ୍ସବରେ ପୂରି ଉଠିଛି । ବଡ଼ଲୋକଠାରୁ ଆରମ୍ଭ କରି ଚାଷୀ ମଜୁରିଆ ପର୍ଯ୍ୟନ୍ତ ସମସ୍ତଙ୍କର ନୂତନ ପରିଧାନ, ନୂତନ ବେଶଭୂଷା । ସୁରେଶବାବୁ ତ ଜଣେ ଜମିଦାର; ତାଙ୍କ ଘରେ ଏହି ଉତ୍ସବଟି ପୂର୍ବରୁ ବଡ଼ ଜାକଜମକରେ ସମାହିତ ହେଉଥିଲା । ମାତ୍ର ଏବେ ଦୁଇବର୍ଷ ହେଲା ଶିଥିଳତା ଦେଖାଯାଉ ଅଛି । ଶଶିପ୍ରଭାଙ୍କର ଏଥିପ୍ରତି ଆଦୌ ଆଗ୍ରହ ଉତ୍ସାହ ନାହିଁ । କାରଣ ଏ ଉତ୍ସବଟି ପିଲାମାନଙ୍କ ଦ୍ୱାରା ବିଶେଷ ଉତ୍ସାହରେ, ଆଡ଼ମ୍ବରରେ ସମ୍ପନ୍ନ ହୁଏ । ଶଶିପ୍ରଭାଙ୍କ ନିଜର'ତ ପିଲା ଝିଲା ନାହାନ୍ତି, ଆଉ ବୀଣା ଓ ପଦ୍ମର ସୁଖ ତାଙ୍କର କଷ୍ଟ, ସେମାନଙ୍କର ଯହିଁରେ ଆନନ୍ଦ, ତାହା ତାଙ୍କର ଦୁଃସହ । ସେଥିପାଇଁ ଆଜି ମାତୃହୀନା ବୀଣାଟିପାଇଁ ନୂଆ ଲୁଗା ଖଣ୍ଡିଏ ନାହିଁ, ଯେଉଁ ବୀଣା ପିନ୍ଧିବାଲାଗି ପାଞ୍ଚ ପ୍ରକାରର ଲୁଗା, ପାଟ, ବୀଣାର ପସନ୍ଦ ମୁତାବକ ମାସକ ଆଗରୁ ଯାଇଥା ହେଉଥିଲା; ବୀଣାର ଅଳି ଅନୁସାରେ ଆଉ ପାଞ୍ଚ ପିଲା ନୂଆ ଲୁଗା ପିନ୍ଧୁଥିଲେ; ସେ ବୀଣାପାଇଁ ଆଜି ଖଣ୍ଡିଏ ନୂଆ କରିଆ ସୁଦ୍ଧା ନାହିଁ । ହା ହତଭାଗିନୀ ! ଶଶିପ୍ରଭାଙ୍କ ସଙ୍ଗରେ ପିଲାଟା କାନ୍ଦି ଅଳି ଲଗାଇବାରୁ ସେ ପୁରୁଣା ପାଟଖଣ୍ଡିକ ପକାଇଦେଇ କହିଲେ, "ନେ, ଚୁଲିପଶି, ପିନ୍ଧ, ପ୍ରାଣ ବାହାରି ଯାଉଛି ।" ମାତ୍ର ବୀଣା ସେଖଣ୍ଡିକ ନ ପିନ୍ଧି ବେଶି କାନ୍ଦିବାକୁ ଲାଗିଲା । ଶଶିପ୍ରଭା ଖୁଦାଟାଏ ପକାଇ ଦେଇ କହିଲେ, " ଇ'ଲେ, ଗେଲବସରୀ

ଝିଅଙ୍କ ପାଇଁ ନୂଆଲୁଗା କଣା ହେଉଛି," ଏହା କହି ପାଟଖଣ୍ଡି ନେଇ ଘରେ ଥୋଇଦେଲେ । ଅବୁଝା ଅବୋଧ ବୀଣାକୁ ବେଶି କାନ୍ଦ ମାଡ଼ିଲା । ପ୍ରକୃତରେ ଜମିଦାର ଘରେ ଯେ ନୂଆ ଲୁଗାର ଅଭାବ ଥିଲା ତା'ନୁହେଁ, ଶଶିପ୍ରଭାଙ୍କ ଉତ୍କଟ ଘୃଣା, ଈର୍ଷା ବୀଣାର ଆନନ୍ଦ ଦେଖିବାକୁ ତାଙ୍କୁ ଦେଉ ନଥିଲା, ଏହା ଭିତରେ ବୀଣା ଅନେକ ଗାଳି ମାଡ଼ ସହିଲାଣି । ଅନ୍ୟଦିନ ହୋଇଥିଲେ ହୁଏତ ସେ ନୀରବ ହୋଇ ସାରନ୍ତାଣି, କାରଣ ସେ ଶଶିପ୍ରଭାଙ୍କୁ ସାପ ଅପେକ୍ଷା ବେଶି ଭୟ କରେ । ମାତ୍ର ଯେତେବେଳେ ସେ ଦେଖୁଛି, ସମସ୍ତେ ନୂଆଲୁଗା ପିନ୍ଧିଛନ୍ତି, "ତା'ର ମାଁ' ଥିଲାବେଳେ କେତେ ପ୍ରକାରର ଲୁଗା ତା'ପାଇଁ ସଜାଇ ରଖୁଥିଲେ" ଏ କଥା ତା'ର କ୍ଷୀଣ ସ୍ମୃତିରେ ଜାଗି ଉଠୁଛି, ସେତେବେଳେ ତା'ର କୋହ ଉଠୁଛି"

ବୀଣାର ଅବସ୍ଥା ଯେତେବେଳେ ଏପରି ସେତେବେଳେ ପଦ୍ମର କଥା ବା କିଏ ପଚାରୁଛି ? ସେ ବର୍ତ୍ତମାନ ପଢ଼ୁଛି କଟକ କଲେଜଏଟରେ । ପୂଜାଛୁଟିରେ ଘରକୁ ଆସିଛି । ମା ଥିଲାବେଳେ ସେ ଘରକୁ କେଡ଼େ ଉତ୍ସାହରେ ଆସେ, ବିଦେଶ ସୁଲଭ ଦୁଃଖ କଷ୍ଟ ଅଭାବ ଅସୁବିଧା ସବୁ ଏହି ପଲ୍ଲୀର ସରଳ ଜୀବନରେ, ବାପ ମାଙ୍କର ଆଦର ସୋହାଗରେ ଅନ୍ତରାଳରେ ଲୁଚାଇଦେବାପାଇଁ । ସେ ଦିନ ଗଣୁଥାଏ କେବେ ଗାଁକୁ ଆସିବ ବୋଲି; ମା ମଲାଦିନୁଁ ସେ ସବୁ ତାର ସରିଛି, ଏଣିକି ସେ ଗାଁକୁ ଆସିଲେ ତାକୁ ବେଶି ଦୁଃଖ ଲାଗୁଛି, ଅନାଦର ଭୋଗିବାକୁ ପଡ଼େ । ବିଶେଷତଃ ଶଶିପ୍ରଭାଙ୍କ ତର୍ଜନଗର୍ଜନ ତିରସ୍କାର, ତାଚ୍ଛିଲ୍ୟ ତା'ର ଦୁଃସହ ହୁଏ । ସେ ଏଥର ଗାଁକୁ ଆସୁ ନ ଥିଲା, କେବଳ ପିତାଙ୍କର ଏକାନ୍ତ ଅନୁରୋଧ, ମା'ଙ୍କର ଶେଷ ସ୍ମୃତି-ପିତୁଲା ବୀଣାର ଦର୍ଶନ ପ୍ରଲୋଭନ ତାକୁ ଏଥର ଗାଁକୁ ଟାଣି ଆଣିଛି । ସେ ଆସିଲାଦିନୁ ଚାଲିଛି ବୀଣା ଉପରେ ଅଉ ତା ଉପରେ ନିଷ୍ଠୁର ଅତ୍ୟାଚାର । ଆଜି ବୀଣାର କାନ୍ଦଣା, ଶଶିପ୍ରଭାଙ୍କ ନିଷ୍ଠୁରତା ନିଜ ଆଖି ଆଗରେ ଦେଖୁଛି । ମାନ୍ଦ

କରିବ କ'ଣ ? ସେ ସହି ନପାରି ଘରୁ ଧୀର ଭାବରେ ଚାଲି ଯାଇ ଦାଣ୍ଡ ପିଣ୍ଡାଟିରେ ନୀରବ ଅଶ୍ରୁଜଳ ବିସର୍ଜନ କରୁଛି ।

ସୁରେଶ ବାବୁଙ୍କର ଏପର୍ଯ୍ୟନ୍ତ ଦେଖାନାହିଁ ସେ କାର୍ଯ୍ୟୋପ-ଲକ୍ଷ୍ୟରେ ବାହାରକୁ ଯାଇଥିଲେ, ଫେରି ଦାଣ୍ଡଦ୍ୱାରରେ ପଡ଼ିଥିବା ଖଣ୍ଡିଏ ଚୌକିରେ ଉପବେଶନ କରିବା ସମୟରେ ବୀଣାର କାନ୍ଦଣା ତାଙ୍କ କାନରେ ବାଜିଲା, ପତ୍ନୀର ଶୁଷ୍କମୁଖ ମଧ୍ୟ ତାଙ୍କ ମନକୁ ଘାଣ୍ଟିପକାଇଲା, ସେ ଘର ଭିତରେ ପଶିଯାଇ ବୀଣାଟିକୁ ପ୍ରଥମେ କୁଣ୍ଢାଇପକାଇଲେ ସାନ୍ତ୍ୱନା ଦେଇ କାନ୍ଦିବାର କାରଣ ପଚାରିଲେ । ମାତ୍ର ସେ ଉତ୍ତର ନ ଦେଇ କାନ୍ଦିବାରେ ଲାଗିଥାଏ । ଶଶିପ୍ରଭା ଗର୍ଜି ଉଠି କହିଲେ, "ହିଁ, ହିଁ, ସେରକ୍ଷୀ ଝିଅକୁ ଧର ଧର । ନୂଆ ଲୁଗା ପାଇଁ ଲଗାଇଛି, ମୁଁ ଏ ପାଠ ଖଣ୍ଡିକ ଦେଲି ଯେ ମନକୁ ପାଇଲା ନାହିଁ । ଏ ଅଝଟୀ ଝିଲାକୁ କିଏ ସମ୍ଭାଳିବ ଲୋ ମା, ଆମେ କଣ ପିଲା ହୋଇ ନ ଥିଲୁଁ, ନା ଦେଖି ନାହୁଁ ।" ସୁରେଶବାବୁ ବୀଣାକୁ ବୁଝାଇ ଶୁଝାଇ ତା ପାଇଁ ଓ ପତ୍ନୀପାଇଁ ଦିଖଣ୍ଡି ନୂଆ ଲୁଗା ବାହାର କରି ଦେଲେ-ବୀଣା ଶାନ୍ତ । ଶଶିପ୍ରଭା ରୋଷକଷାୟିତ ନେତ୍ରରେ ଉଭୟଙ୍କ ଆଡ଼କୁ ଗୋଟାଏ ତୀବ୍ର କଟାକ୍ଷ କେବଳ ପକାଇଲେ ମାତ୍ର ।

## —ପାଞ୍ଚ—

ସୁରେଶ ବାବୁ ବୈଠକ ଖାନାରେ ଉପବିଷ୍ଟ । ଗୋଟିଏ ସୁନ୍ଦର ଗାଲିଚା ଉପରେ କେତେଖଣ୍ଡି ଚୌକି ପଡ଼ିଛି; ମଧ୍ୟରେ ଗୋଟିଏ ସୁବୃହତ୍ ଗୋଲାକାର ମେଜ । ଗୃହଟି ନାନାପ୍ରକାର ଚିତ୍ରରେ ସୁସଜ୍ଜିତ । ଶୁଭ୍ରବସ୍ତ୍ରାବୃତ ମେଜଟି ଉପରେ ମଧ୍ୟ କାଚ ଗ୍ଲାସ, କୃତ୍ରିମ ପୁଷ୍ପଗୁଚ୍ଛ ପ୍ରଭୃତି ନାନାପ୍ରକାର ସୁନ୍ଦର ଜିନିସ ସ୍ଥାପିତ । ଗୃହଟି ଆଧୁନିକ ସୁରୁଚି-ପୂର୍ଣ୍ଣ ଶିଳ୍ପ ବସ୍ତୁରେ ଚମତ୍କାର ଦେଖାଯାଉ ଅଛି । ଅତର ଏସେନ୍ସର

ଗନ୍ଧ ସେହି ଗୃହର ବାୟୁ ମଣ୍ଡଳରେ ଖେଳି ବୁଲୁଛି । ସୁରେଶବାବୁଙ୍କର ନିତି କେତେଜଣ ବନ୍ଧୁ ଆସି ଏହିଘରେ ବସନ୍ତି । ନାନାବିଧ ହସ ଖେଳି ହୁଏ । ଯାବତୀୟ ଘଟନା ସବୁ ଆଲୋଚିତ ହୁଏ । ଭଦ୍ରବ୍ୟକ୍ତି ମଧ୍ୟ ଅଭ୍ୟର୍ଥିତ ହୁଅନ୍ତି । ଗାନ ବାଜଣା ମଧ୍ୟ ହୁଏ । ମାତ୍ର ଏହି ଆନନ୍ଦମୟ କକ୍ଷଟିର ମାଧୁରୀ କ୍ରମଶଃ ଚାଲି ଯାଉଛି । ଏବେ କେତେଦିନ ହେଲା ସୁରେଶବାବୁ ବିରକ୍ତ ହେଲପରି ବୋଧ ହେଉଛନ୍ତି । ଗାନ୍, ବାଜଣା, ଆଳାପ ପ୍ରତି ସେ ସମ୍ପୂର୍ଣ୍ଣ ବୀତସ୍ପୃହ । ଏସବୁର କାରଣ ଶଶିପ୍ରଭାଙ୍କ ଅଯଥା ତିରସ୍କାର ବୋଲି ମନେହୁଏ । ଶଶିପ୍ରଭା ଆସିବା ଦିନୁଁ ଘରର ଖର୍ଚ୍ଚ ଯେପରି ବଢ଼ି ଯାଇଛି, ଜମିଦାରୀର ଆୟ ମଧ୍ୟ ସେହି ପରିମାଣରେ କମିଛି । ନିଜର ଆଡ଼ମ୍ବର, ପ୍ରତିପତ୍ତି ଜଗିବାପାଇଁ ଖର୍ଚ୍ଚ ଅନାଟନ ହେଉଛି; ଫସଲ ଅବସ୍ଥା ଭଲ ନାହିଁ । ଏହିସବୁ ଭାବି ସୁରେଶବାବୁ ଯେତେବେଳେ ତାଙ୍କର ଦୁର୍ବୋଧ ମନକୁ ପ୍ରିୟାଙ୍କ ମଧୁର ବଚନ ସୁଧା ରସରେ ବୁଡ଼ାଇ ଦେବାକୁ ବସନ୍ତି, ସେତିକିବେଳେ ଶଶିପ୍ରଭା ଢାଳି ଦିଅନ୍ତି, ତୀବ୍ର କଟୂକ୍ତି ଗରଳ ! ସେତିକରେ ସୁରେଶ ବାବୁଙ୍କ ସରଳ ଅନାବିଲ ପ୍ରାଣରୁ ମାନବିକତା ଟିକକ ଲୋପ ପାଏ—କ୍ରୋଧ,ଅପମାନ ଉତ୍ତେଜନାର ଆତିଶଯ୍ୟରେ । ଏହି କ୍ରୋଧ, ଅଭିମାନର ମାତ୍ରା ବଢ଼ି ବଢ଼ି ବର୍ତ୍ତିମାନ ଅତ୍ୟାଚାର-ଅଙ୍କୁର ତାଙ୍କ ହୃଦୟରେ ଜାତ ହୋଇଛି । ତାଙ୍କ ଚରିତ୍ରର ଘୋର ପରିବର୍ତ୍ତନ ମଧ୍ୟ ଲୋକମାନେ ଲକ୍ଷ୍ୟ କଲେଣି । ଯେଉଁ ସୁରେଶ ବାବୁଙ୍କର ସରଳ ବ୍ୟବହାରରେ ସରସ ଅମିୟବଚନ ମାଧୁରୀରେ କ୍ରୋଧତପ୍ତ ପ୍ରାଣ, ଦରିଦ୍ର ନିଃସହାୟର କ୍ଳାନ୍ତଆତ୍ମା ଆଦର ଆଶ୍ୱାସନା ଲାଭ କରୁଥିଲା, ଏବେ ସେହି ସୁରେଶବାବୁଙ୍କର ରୋଷଦୀପ୍ତ ନୟନ, ଦୁଃସହ ତିରସ୍କାର, ପ୍ରହାର, ଶତଚିତ ଲୋକଙ୍କ ମନରେ ଆତଙ୍କ ଆଣୁଛି । ମନ୍ଦକର୍ମର ସଙ୍ଗୀ ଅନେକ ତୋଷାମଦକାରୀଙ୍କ ପ୍ରରୋଚନାରେ ଯୌବନର ବଳ, ସାହସ, ଉନ୍ମାଦନା ଏ ବୟସରେ ଆଣିବାପାଇଁ ସମୟେ ସମୟେ ସେ

ସୁରଦେବାଙ୍କୁ ମଧ୍ୟ ଅବରୋଧନା କଲେଣି । ଶଶିପ୍ରଭା ମଧ୍ୟ ଏ କାର୍ଯ୍ୟର ଉପଯୁକ୍ତ ସଙ୍ଗୀନୀ ହୋଇ ପାରିଛନ୍ତି । ଠିଙ୍କା କରଜ ହୋଇ ବାଣ୍ଟ ମଦ୍ୟ ଅଣାଯାଉଛି ।

ପ୍ରକୃତରେ ଦେଖିବାକୁ ଗଲେ ଏ ସବୁର ମୂଳରେ ଥିଲେ ଶଶିପ୍ରଭା । ସୁରେଶବାବୁଙ୍କୁ ଯେତେବେଳେ ଶଶିପ୍ରଭା ଅଳଙ୍କାର କିମ୍ବା କୌଣସି ବିଳାସ ବସ୍ତୁର ବରାଦ ଦେଇ ବସନ୍ତି ସେତେବେଳେ ସୁରେଶବାବୁ ଟଙ୍କାର ଅଭାବ, ଖଜଣାର ଅନାଦାୟ ବା ପ୍ରଜାମାନଙ୍କ ଦୁର୍ଦ୍ଦଶା ଜଣାଇ ଅପେକ୍ଷା କରିବାକୁ କହନ୍ତି । ଏତିକିରେ ଶଶିପ୍ରଭାଙ୍କ କ୍ରୋଧବହ୍ନି ଜଳଉଠେ । ସେ ଅକର୍ମଣ୍ୟ, ନିଲଠା ପ୍ରଭୃତି ଯଥେଚ୍ଛ ଭର୍ତ୍ସନା କରନ୍ତି; କହନ୍ତି "ତମ ଅଯୋଗ୍ୟ ପଣିଆରୁ ସେମାନେ ସେପରି କରୁଛନ୍ତି; ମୋହରିରମାନେ ଯେ ଯୁଆଡ଼େ ଖାଉଛନ୍ତି ତମରି ବୋକାମି ଯୋଗୁଁ, ତମକୁ କହିଲାବେଳେ ତ ପ୍ରଜାଙ୍କ ଅବସ୍ଥା ଦେଖି ଦୟା ଉପୁଜୁଛି, ଘର ଚଳିବ କିପରି ? କେତେ ଦୟାବନ୍ତ ପୁରୁଷ ଲୋ—ସେହି ଦୟାକୁ ଗୃହୁଥା । କାଲେ ମା' ସେମାନେ ମଲେ କେତେ, ଗଲେ କେତେ, ଆମରି କ'ଣ ଯାଉଛି," ଇତ୍ୟାଦି ଇତ୍ୟାଦ ଏହିପରି ଥରେ ନୁହେଁ, ଶତ ଶତବାର ସୁରେଶବାବୁ ଶୁଣି ଶୁଣି ତାଙ୍କର ହୃଦୟକୁ ପଥର କରିଛନ୍ତି । ଏକଦିଗରେ ଶଶିପ୍ରଭାଙ୍କ ସୌନ୍ଦର୍ଯ୍ୟ ମୋହ, ମନୋରଞ୍ଜନ; ଅନ୍ୟଦିଗରେ ତୀବ୍ର ଉତ୍ତେଜନାପୂର୍ଣ୍ଣ ବାଣୀ ତାଙ୍କୁ ଅମନୁଷ୍ୟ କରି ଦେଇଛି । ସେ ପ୍ରତିଜ୍ଞା କରିଛନ୍ତି ଶଶିପ୍ରଭାଙ୍କ ସନ୍ତୋଷ ଲାଗି ନିଜର ସବୁ ସଦ୍‌ଗୁଣ ବିସର୍ଜନ ଦେଇ ନିରୀହ ପ୍ରଜାଙ୍କ ରକ୍ତ ଶୋଷଣ କରିବାକୁ ହେବ ! ଏହାମଧ୍ୟ ସେ କାର୍ଯ୍ୟରେ ପରିଣତ କରୁଛନ୍ତି । ଶଶିପ୍ରଭାଙ୍କ ମାୟାଜାଲ ତାଙ୍କର ଜ୍ଞାନ, ବୁଦ୍ଧି ଘୋଡ଼ାଇ ପକାଇଛି । ଶାନ୍ତିମୟ ବୈଠକଖାନା ପ୍ରଜାଙ୍କ କ୍ରନ୍ଦନ ଧ୍ୱନିରେ ପୂରି ଉଠିଛି । ବୈଠକଖାନାକୁ ଯିବା ନାଁ ଶୁଣିଲେ ଲୋକଙ୍କ ପ୍ରାଣ ଆତଙ୍କରେ ଅସ୍ଥିର ହେଉଛି । ଏହି ଅତ୍ୟାଚାରର ପାଇଁ ଯମଦୂତ ପରି ନୁଆ-

ଲୋକମଧ୍ୟ ନିଯୁକ୍ତ କରାଯାଇଅଛନ୍ତି । କାହାର ହାତ ଭାଙ୍ଗୁଛି, କାହାର ପାଦ ପିଠି ଜଖମ ହେଉଛି, କାହାର ମୁଣ୍ଡ ଫାଟୁଛି, ଜୀବନ ବଦଳରେ ଲୋକେ ଗହଣା ଗଣ୍ଠି କଂସା ବାସନ ବନ୍ଧକ ପଇସା କାଯାଗାରେ ପାଞ୍ଚ ପଇସା ଦେଇ ମୁକ୍ତିଛନ୍ତି । ଅତ୍ୟାଗୃହୀର ଅମ୍ଭାସବଦା ଅଶାନ୍ତି । ସେଥିପାଇଁ ସୁରେଶବାବୁଙ୍କ ମନରେ ସୁଖ ନାହିଁ, ସ୍ୱକୀୟ ପ୍ରବୃତ୍ତି ବିରୁଦ୍ଧରେ ସେ ଲଢୁଛନ୍ତି । ଶଶିପ୍ରଭା ସେହିସମରାନଳରେ ଯୋଗାଉଛନ୍ତି ଉପଯୁକ୍ତ ଇନ୍ଧନ । ତାଙ୍କର ଚୈତନ୍ୟ ଆସୁଛି । ମାତ୍ର ଖସିଗଲା ଗୋଡ଼ ତଳକୁ ତଳକୁ । ଶଶିପ୍ରଭାଙ୍କ କଥା ମନରେ ପଡ଼ିବାମାତ୍ରେ ସେ ଭାବ ଲୋପ ପାଉଛି, ପୁଣି, ସେ ଚଳାଉଛନ୍ତି ତାଙ୍କର ନିଷ୍ଠୁର ପେଷଣୀ ।

## — ଛଅ —

ଫଗୁଣର ଫଗୁବୋଳା ଧରଣୀ-ବକ୍ଷରେ ନରନାରୀ ସମସ୍ତେ ଫଗୁ-ଖେଳରେ ମତ୍ତ । ଅବିର ଧୂଳିରେ ସୁବର୍ଣ୍ଣପୁର ଗ୍ରାମଟି ରଞ୍ଜିତ । ସୁରେଶ-ବାବୁଙ୍କ ଘରେ ଆଜ ଫଗୁ ଖେଳର ବିଶେଷ ଧୂମ୍ ଲାଗିଛି ଘର ଦ୍ୱାର ଅଗଣା ସବୁ ଅରୁଣ ରଙ୍ଗରେ ରଞ୍ଜିତ । ଗାଁର ଦେବାଳୟଟି ଶଙ୍ଖ ଘଣ୍ଟା ରୋଳରେ ମୁଖରିତ । ଫଗୁଣର ଫଗୁଆ ପବନରେ ସେହି ଧ୍ୱନି ଭାସିଆସି ଉତ୍ସବଟିକୁ ଅଧିକ ମଧୁମୟ କରିଦେଇଛି । ସୁରେଶବାବୁ ମୁଠା ମୁଠା ଫଗୁ ଫିଙ୍ଗିବାରେ ଲାଗିଛନ୍ତି । ଶଶିପ୍ରଭା ମଧ୍ୟ ଅନ୍ଦର ମହଲରେ ଗ୍ରାମ-ରମଣୀଙ୍କୁ ଫଗୁ ଫିଙ୍ଗି ଫିଙ୍ଗି କ୍ଳାନ୍ତ ହୋଇ ଗୋଟିଏ ଗବାକ୍ଷରେ ବାହାରର ଖେଳ ଦେଖୁଛନ୍ତି । ଜମିଦାରଙ୍କ ଖର୍ଚ୍ଚର ସୀମା ନାହିଁ । ଘରେ ପିଠାପଣାର ଆୟୋଜନ ମଧ୍ୟ ହେଉଛି । କେତେ ନୂଆ ନୂଆ ଅତିଥିଙ୍କ ଅଭ୍ୟର୍ଥନା ଚାଲିଛି । ଜମିଦାରଙ୍କ ମୋହରିରମାନେ ମଧ୍ୟ ଭେଦ ଭାବ ଭୁଲି ଜମିଦାରଙ୍କ ସହ ଫଗୁଖେଳରେ ମାତିଛନ୍ତି । ଆଜ ସମସ୍ତଙ୍କର ଛୁଟି । ନବୀନକୁ ମିଶି ଜମିଦାରଙ୍କର ତିନିଜଣ ମୋହରିର । ନବୀନକୁ ଜମିଦାର ଅତିଶୟ

ହୁଲପାନ୍ତି । ତା'ର ମଧ୍ୟ ପ୍ରତାପ ଖୁବ୍ ବେଶୀ । ଜମିଦାରଙ୍କର ପୂର୍ବ ଅଞ୍ଚଳର ନାୟେବ ସେ କହିଲେ ଚଳେ । ସେ ଅଞ୍ଚଳର ପ୍ରଜା ନବୀନର ନାଁ ଶୁଣିଲେ ଚମକି ଉଠନ୍ତି । ନବୀନ ଗୋଟିଏ ଗରିବ କରଣଘରର ପିଲା । ସୁରେଶବାବୁ ତାର ଅବସ୍ଥା ଦେଖି ଦୟା ବହି ଏ ଚାକରୀ ଖଣ୍ଡି, ଦୁଇ, ତିନବର୍ଷ ହେଲା ତାକୁ ଦେଇଛନ୍ତି । ନବୀନ ଦେଖିବାକୁ ଗୋଟିଏ ବଳିଷ୍ଠ ଯୁବକ, ବୟସ ଚବିଶ ବର୍ଷ ହେବ । ରୂପଟି ବେଶ୍ ଉଜ୍ଜ୍ୱଳ ତାଏଲ । ଏହି ଫଗୁଖେଳରେ ସେ ବେଶି ମାତିଛି । ସେ ଯେତେବେଳେ ମୁଠାଏ ଫଗୁ ଅନ୍ୟଜଣେ ଲୋକ ଉପରକୁ ଫିଙ୍ଗି ପଛକୁ ଫେରିଯାଇ ଝରକା ଆଡ଼କୁ ତାର ଦୃଷ୍ଟି ଅସତର୍କରେ ପକାଇଦିଏ ଦେଖେ, ଗୋଟିଏ ଯୁବତୀର ଦୁଇଟି ଚକ୍ଷୁ ଅପଲକ ଭାବେ ତା'ର ପ୍ରତୀକ୍ଷାରେ ରହିଛି; ଯେପରି କି ତା'ର ରୂପ-ସୁଧାପାନରେ ବ୍ୟସ୍ତ । ଯୁବକ ଯୁବତୀର ଚାରିଚକ୍ଷୁର ମିଳନ ହୋଇଗଲା । ଯୁବକ ତା'ର ଦୃଷ୍ଟି ଶକ୍ତିକୁ ଅନିଚ୍ଛାସତ୍ତ୍ୱେ ତଳକୁ କରିଦେଲା । ମାତ୍ର ଯୁବତୀର ଅଧର କୋଣରୁ ଫୁଟିଉଠିଲା ଗୋଟିଏ ମୃଦୁହାସ୍ୟର ଉଜ୍ଜ୍ୱଳରେଖା; ଆଉ ନେତ୍ରପ୍ରାନ୍ତରୁ ଗୋଟାଏ ବିଜୟାନନ୍ଦର ଦୀପ୍ତି । ନବୀନ ଓ ନବୀନାର ଏହି ହେଲା ନବୀନ ପ୍ରଣୟର ସୂତ୍ରପାତ ।

କ୍ରମେ ଉତ୍ସବ ସରିଲା, ଯେ ଯାହା ଘରକୁ ଗଲେ । ସୁରେଶବାବୁ ମଧ୍ୟ ଘରକୁ ଫେରିଲେ । ଏ ଉତ୍ସବରେ କେବଳ ବୀଣାଟିର ଦେଖାନାହିଁ ତା' କଥା ବୁଝିବାକୁ କାହାର ଅବସର ନାହିଁ । ସେ ବିଚାରୀ ଭୀଷଣ ଜ୍ୱରରେ ପୀଡ଼ିତା, ସନ୍ଧ୍ୟାବେଳକୁ ଲୁଗାଖଣ୍ଡିଏ ଘୋଡ଼ାଇ ହୋଇ ଘରର ଗୋଟିଏ କୋଣରେ ପଡ଼ିଛି । ଶଶୀପ୍ରଭା ମଧ୍ୟ ତା'ଆଡ଼କୁ ଠିକଏ ଆଡ଼ଆଖିରେ ଚାହୁଁନାହାନ୍ତି । ସୁରେଶବାବୁ ପ୍ରଥମେ ଘରକୁ ଫେରି ମନେ ମନେ ବୀଣାକୁ ଅନେକ ଖୋଜିଲେ; ଶେଷରେ ନଦେଖି ଶଶିପ୍ରଭାଙ୍କୁ ବୀଣାର ସନ୍ଧାନ ପଚାରିଲେ । ଶଶିପ୍ରଭା ତାଚ୍ଛିଲ୍ୟଭାବ ଦେଖାଇ କହିଲେ, "ଟିକିଏ କ'ଣ ସର୍ଦ୍ଦିହୋଇଛି ଯେ ଝିଅ ସେଘରେ ଜରେଇଛନ୍ତି ।"

ସୁରେଶବାବୁ ଘର ଭିତରେ ପଶିଯାଇ 'ବୀଣା ବୀଣା' ବୋଲି ଅନେକ ଡାକିଲେ । ମାତ୍ର କେହି ତାଙ୍କୁ କିଛି ଉତ୍ତର ଦେଲନାହିଁ । ଶେଷରେ ଅନେକ ଆଣି ଦେଖିଲେ, ଘରର ଗୋଟିଏ କୋଣରେ ସେ ଭୂମିରେ ଅଚେତନାବସ୍ଥାରେ ପଡ଼ିଛି । ଜ୍ୱରର ତାପ ଖୁବ୍ ବଢ଼ିଯାଇଛି । ସୁରେଶ ବାବୁ ତାକୁ ଝାଡ଼ ଝୁଡ଼ କରିନେଇ ଖଟଉପରେ ଶୁଆଇଦେଲେ । ଗାଁର ବୈଦ୍ୟଙ୍କୁ ଡକାଇ ପଠାଇଲେ । ସଙ୍ଗେ ସଙ୍ଗେ ପଥ୍ୟ ଔଷଧର ବ୍ୟବସ୍ଥା ହେଲା । ସୁରେଶବାବୁ ଟିକିଏ ଆଶ୍ୱସ୍ତ ହେଲେ ।

ଶଶିପ୍ରଭାଙ୍କର ଏଥିପ୍ରତି ଭ୍ରୁକ୍ଷେପ ନ ଥିଲା । ତାଙ୍କର ମନ, ଧ୍ୟାନ ଭିନ୍ନ ଆଡ଼େ ଥିଲା । ବିଶେଷତଃ ବୀଣା ପଦ୍ମାକୁ ସେ ଶତ୍ରୁ ମନେ କରୁଥିଲେ । ବୀଣାର ଅସୁସ୍ଥତା ଦେଖି ମଧ୍ୟ ତାଙ୍କର ଟିକିଏ ଦୟା ଜାତ ହେଉ ନ ଥାଏ । ହୃଦୟରେ ତାଙ୍କର ଯେଉଁ ଦୁର୍ବାର ଲାଳସା ଜାତ ହୋଇଥିଲା, ତା'ର ମେଣ୍ଟିବାର ଉପାୟ ଖୋଜିବା ଛଡ଼ା ଆଉ କାହିଁରେ ତାଙ୍କ ମନ ଲାଗୁ ନ ଥିଲା । ସୁରେଶବାବୁଙ୍କୁ ଭଲଭାବେ ସେ ପଦେ କଥା ମଧ୍ୟ ସନ୍ଧ୍ୟା-ବେଳକୁ କହିପାରୁ ନ ଥିଲେ । ଅନ୍ୟ ମନସ୍କ ଥିଲାପରି ବୋଧ ହେଉ-ଥିଲେ । ରାତିରେ ସୁରେଶବାବୁ ଖାଇ ପିଇ ଶୋଇବାକୁ ଗଲେ । ଶଶିପ୍ରଭା ମଧ୍ୟ ଖାଇ ଶୋଇବାକୁ ଗଲେ । ମାତ୍ର କୌଣସିଥିରେ ତାଙ୍କର ତୃପ୍ତି ଆସିଲା ନାହିଁ । ଶୟନେ ସ୍ୱପ୍ନେ ତାଙ୍କର ଧ୍ୟାନ ଲାଗି ରହିଲା ଗୋଟିଏ ଭିନ୍ନ ରୂପରେ, ଆଉ ମନ ଆବଦ୍ଧ ହେଲା ଭିନ୍ନ ମୋହରେ ।

## —ସାତ—

ଅନାବୃଷ୍ଟି ଯୋଗୁଁ ଫସଲର ଅବସ୍ଥା ଭଲନାହିଁ । ବିଶେଷତଃ ସୁରେଶବାବୁଙ୍କ ଜମିଦାରୀର ପୂର୍ବାଞ୍ଚଳର ପ୍ରଜାମାନେ ସୁବୃଷ୍ଟି ସମୟରେ ମଧ୍ୟ ଜଳକଷ୍ଟ ଅନୁଭବ କରନ୍ତି । ଏବର୍ଷ ଏକେତ ଜଳକଷ୍ଟ, ସର୍ବୋପରି ଅନ୍ନକଷ୍ଟ, ବର୍ଷା ନଥିବାରୁ ଫସଲ ନାହିଁ । ଫସଲର ଆମଦାନି ନଥିବା

ହେତୁ ପ୍ରଜାଙ୍କ ଦୁର୍ଦ୍ଦଶା ବଢ଼ିଯାଇଛି । ସୁରେଶବାବୁ ଏହି ଚିର ଅବହେଳିତ ନିଃସହାୟ ସ୍ୱୀୟ ପ୍ରଜାମାନଙ୍କ ଦୁଃଖ ନିଜେ ଅବଲୋକନ କରିବାକୁ ଯିବେବୋଲି ବାହାରିଛନ୍ତି । ସଙ୍ଗରେ ଆତ୍ମୀୟ ବନ୍ଧୁ ଚାକର ବାକର ମିଶି ପଚାଶ ଛତିଶଜଣ ଲୋକ । ସାଙ୍ଗରେ କୁଆଡ଼ ଠିକିଏ କର୍ମଚାରୀ ମାନେ ସୁରେଶବାବୁ ବାହାରି ପଡ଼ିବାରୁ ତୋଷାମଦକାରି ଦଳ ସଙ୍ଗେ ସଙ୍ଗେ ସ୍ତୁତିଗାନ ଉଠାଇଲେ 'ଆହା, କେଡ଼େ ଦୟାବନ୍ତ ଜମିଦାର, ଏ ମହାମଣ୍ଡଳରେ ଏପରି ଜଣେଲୋକ ନଥିବେ, ନିଜ ଝିଅକୁ ନ ପଚାରି ପ୍ରଜାଙ୍କ ଦୁଃଖ ଶୁଣି ଦଉଡ଼ୁଛନ୍ତି ।'

ପ୍ରକୃତରେ ସୁରେଶବାବୁ ସେ ଉଦ୍ଦେଶ୍ୟରେ ବାହାରି ନ ଥିଲେ । ତାଙ୍କର ଅଭାବ ଦିନୁଁ ଦିନ ବଢ଼ିଯାଉଥିଲା । ପ୍ରଜାଙ୍କଠାରୁ କୌଣସି ପ୍ରକାର ଖଜଣା ଅଦାୟ ହୋଇପାରୁ ନଥିଲା । ଏ ଅଞ୍ଚଳରେ ତାଙ୍କର ଖଜଣାର ପରିମାଣ ଯେପରି ବେଶୀ, ଅନାଦାୟ ଭାଗ ସେପରି ଅଧିକ ଥିଲା । ସୁରେଶବାବୁଙ୍କ ଭିତର ଉଦ୍ଦେଶ୍ୟ ଥିଲା ପ୍ରଜାମାନଙ୍କୁ ବୁଝାଇ ଶୁଝାଇ, ଧମକ ଚମକ ଦେଇ, ସେମାନଙ୍କ ଉପରେ ବଳ ପ୍ରୟୋଗ କରି ଯେ କୌଣସି ପ୍ରକାର ଖଜଣା ଅସୁଲ କରିବାକୁ ହେବ । ଏହାଦ୍ୱାରା ସେ ଭାବଛନ୍ତି ପ୍ରିୟାଙ୍କ ସନ୍ତୋଷ ଉତ୍ପାଦନ ଅଭାବ ମୋଚନ ପ୍ରଭୃତି ସମସ୍ତ ଉଦ୍ଦେଶ୍ୟ ତାଙ୍କର ସାଧିତ ହେବ । ପ୍ରଜାମାନେ ମଧ ଜମିଦାରଙ୍କ ଆଗମନ ଶୁଣି ନାନା ଆଶଙ୍କା କରୁଛନ୍ତି । ଜମିଦାର ଏକ ସପ୍ତାହ ରହିବେ । ସଙ୍ଗରେ ପଚାଶ ଛତିଶ ଲୋକ । ପ୍ରତିଦିନ ଏତେ ଲୋକଙ୍କ ପାଇଁ ଚାଉଳ, ଘିଅ, ମଇଦା, ଡାଲି, ପରିବା, ମାଛ, ମାଂସ ଯୋଗାଇବାକୁ ପଡ଼ିବ । ମୋହରିରମାନଙ୍କ ପ୍ରବଳ ଜୁଲମ ଆରମ୍ଭ ହେଲାଣି । ବେଡ଼ ଉପରେ କୋରଡ଼ା ମାଡ଼ପରି ପ୍ରଜାମାନେ ଥରିଲେଣି । ଜମିଦାରଙ୍କ ରହିବା ପାଇଁ ଖମାର ଘରଟି ସଜା ଯାଇଛି, ତମ୍ବୁ ମଧ ପଡ଼ିଛି, ଲୋକମାନେ ଘରର ଏକମାତ୍ର ସମ୍ବଳ ଥାଳି, କଂସା ଖଣ୍ଡିମାନ

ବଡ଼ ଜମିଦାରଙ୍କ ପାଇଁ ସବୁ ଯୋଗାଡ଼ ଅଛନ୍ତି । ଯେ ନ ଯୋଗାଉଛି ତା' ଉପରେ ଚାଲିଛି ନିର୍ଦ୍ଦୋଷ ପ୍ରହାର । ପ୍ରଜାମାନଙ୍କ ପାଞ୍ଚଟଙ୍କାର କିନିସ ଜମିଦାରଙ୍କ ନାମରେ ଦୁଇଟଙ୍କାରେ ମଧ୍ୟ ଅସୁଲ କରାଯାଉଛି । ଦୁଧ ଯୋଗାଇବା ପାଇଁ ଗାଈ, ମଇଁଷି ସବୁ ବନ୍ଧାଘରରେ ନିଆ ଯାଉଛି । ଗୁରୁଅଡ଼େ ହାହା ହାହା ନାଦ । ବାୟୁମଣ୍ଡଳ ନୈରାଶ୍ୟର ତପ୍ତ ନିଃଶ୍ୱାସରେ ପୂର୍ଣ୍ଣ ।

ଏତେକ ସହି ମଧ୍ୟ ପ୍ରଜାମାନଙ୍କ ହୃଦୟ କି ଏକ ଅତର୍କିତ ଅଶଙ୍କାରେ ଥରୁଛି । ଯଥା ସମୟରେ ଜମିଦାର କେତେଖଣ୍ଡି ଗାଁ ଅତିକ୍ରମ କରି ଅବସ୍ଥା ଦେଖି ଦେଖି ଖମାରଘରଠାରେ ପହଞ୍ଚିଲେ । ଦେଖିଲେ କ'ଣ ? ମେଘଶୂନ୍ୟ ନିର୍ମଳ ଆକାଶଟାପରି ଗୁରୁଅଡ଼ଟା ଶୁଷ୍କ । ନୀରସ ମରୁ ପରି ସଜୀବ ସରସ ଗ୍ରାମ-ପ୍ରକୃତି ଅନାବୃଷ୍ଟି ଯୋଗୁଁ ମଳିନ ଓ ଲକ୍ଷ୍ମୀହୀନ । ଜମିଦାରଙ୍କୁ ଦେଖିବା ପାଇଁ, ବାଧ୍ୟତାମୂଳକ ଭକ୍ତି ଦେଖାଇବା ପାଇଁ ରୁଣ୍ଡ ହୋଇଥିବା ଅନଶନ ଗ୍ରସ୍ତ ବାଳକ ବାଳିକା, ସ୍ତ୍ରୀ ପୁରୁଷଙ୍କ ଚେହେରା ପାଣ୍ଡୁର ବର୍ଣ୍ଣ, ଅଙ୍ଗ କୃଶ ଓ ମଳିନ । ସମସ୍ତଙ୍କର କଙ୍କାଳସାର ଦେହ, ଲକ୍ଷ୍ମୀଛଡ଼ା ବେଶ । ସରଳା ପଲ୍ଲୀ ଅଙ୍ଗନା ଛିନ୍ନ ମଳିନ ବସ୍ତ୍ର ପରିଧାନ କରି କାହିଁ ଏକକୋଶ, ଦେଢ଼କୋଶ ଦୂରରୁ ରୁଦ୍ଧନିଶ୍ୱାସରେ ଟେକିଲ ଜଳଭରା କଳସୀ ବାହି ପରିବାରର ତୃଷା ନିବାରଣ କରିବାକୁ ଧାଇଁଛି । ଗୁରୁଅଡ଼ ହା ହତାଶମୟ ।

ସୁରେଶବାବୁ ଏସବୁ ଦେଖି ପ୍ରଜାଙ୍କର ଦୁର୍ଦ୍ଦଶା ଅନୁଭବ କରୁଥିଲେ ମଧ୍ୟ ପ୍ରବଳ ଅର୍ଥଲିପ୍ସା ତାଙ୍କୁ ଅନ୍ଧ କରି ଦେଇଥିଲା । ସେ ଦେଖି ଦେଖୁ ନ ଥିଲେ; ବୁଝି ବୁଝୁ ନ ଥିଲେ । ସେ ବନ୍ଧୁ ବାନ୍ଧବ ସମଭି-ବ୍ୟାହାରରେ ଖମାର ଘରେ ପହଞ୍ଚି ଆନନ୍ଦରେ ପ୍ରଥମଦିନଟା କଟାଇଲେ । ତତ୍ପରଦିନ ଗୁରୁଅଡ଼ୁ ମୁଖ୍ୟ ପ୍ରଜା କେତେକଜଣଙ୍କୁ ଡାକି ଖଜଣା ଆଦାୟ ଦେବାକୁ କହିଲେ । ସମସ୍ତେ ଏକସ୍ୱରରେ କହିଲେ "ହଜୁର, ଆପଣଙ୍କ

ସ୍ୱଚକ୍ଷୁରେ ଆମ ଅବସ୍ଥା ଦେଖୁଛନ୍ତି; ଯେଉଁଦିନ ଭାତ ମୁଠାଏ ଭାଗ୍ୟରେ ଜୁଟୁଛି, ସେ ଦିନକୁ ଅତି ଶୁଭଦିନ ବୋଲି ଅମ୍ଭେମାନେ ମନେ କରୁଛୁଁ । ଜଠର ଜ୍ୱାଳାରେ ଆମ ଭିତରୁ ପ୍ରାୟ ଅର୍ଦ୍ଧେକ ଲୋକ ପୁଅ ମାଇପଙ୍କୁ ନେଇ ରେଙ୍ଗୁନ୍ ସିଲଟ୍ ପଳାଇଲେଣି । ଜଳ ଏପରି ଦୁଷ୍ପ୍ରାପ୍ୟ ହେଲାଣି ଯେ କେହି ଅଉ ବଞ୍ଚି ରହିଲା ପରି ଲାଗୁନାହିଁ । ଫସଲ ତ ଜଳ ଅଭାବରୁ ଗଲା । ଯେ ବା ଯାହା ପାଇଥିଲା, ତାହା ମାସକୁ ନଅଣ୍ଟ । ଆଉ ରକ୍ଷାର ଉପାୟ ନାହିଁ । ଘାରୁ ନାଡ଼ ଖାଇ, ମୂଲ ଲାଗି ବଞ୍ଚୁଛୁ । ମୂଲ ମଧ ମିଳୁନାହିଁ । ଭଗବାନେ ବଞ୍ଚାଇ ଥିଲେ, ଆପଣଙ୍କ ଖଜଣା ସୁଧ ସହି ଶୁଝିଦେବୁଁ । କଦାପି ବାକି ରହିବ ନାହିଁ । ହଜୁର ମା ବାପ, ଆଉ ଆମ କଥା କିଏ ବୁଝିବ ?"

ସୁରେଶବାବୁ ଦେଖିଲେ ଏପରି ଏମାନଙ୍କୁ ଏକଜୋଟ ହଲେ କିଛି କାର୍ଯ୍ୟ ହେବନାହିଁ । ସଇତାନ ଗୁଡ଼ାକ ନାନା ଛଳନା କାଢ଼ିବେ । ଅଙ୍ଗୁଠି ବଙ୍କା ନ କଲେ ଘିଅ ବାହାରେ ନାହିଁ । ମୁଁ ଯଦି ଏମାନଙ୍କଠାରୁ ପଇସା ବାହାର ନ କରେ ତେବେ ଅଉ କିଏ କରିବ ? ଏହିପରି ମନରେ ଭାବି ସେଦିନ ସେମାନଙ୍କୁ ବିଦାୟ ଦେଇ ତତ୍ପରଦିନ ଏ ଗାଁରୁ ସେ ଗାଁରୁ ପ୍ରଧାନ ପ୍ରଧାନ ଲୋକ କେତେ ଜଣଙ୍କୁ ଡକାଇ ଅଣିଲେ । ପୂର୍ବଦିନ ବିଦାୟ ହେଲା ବେଳେ ପ୍ରଜାମାନେ ଭାବିଥିଲେ ଜମିଦାର ଆମ ଗୁହାରି ଶୁଣିଲେ । ମାତ୍ର ଯେତେବେଳେ ତତ୍ପରଦିନ ସେମାନଙ୍କ ଭିତରୁ କେତେ ଜଣଙ୍କ ପିଠିରେ ପ୍ରହାର ଚିହ୍ନ, ଆଖିରେ ଅଶ୍ରୁଧାର ଦେଖିଲେ ସେତେ-ବେଳେ ବୁଝି ପାରିଲେ ପିଶାଚ ଜମିଦାରର କୌଶଳ । ନିଜେ ମାଡ଼ ଭୋଗିଲେ; ଘରୁ ବଳାତ୍କାରରେ ଜିନିସ କାଢ଼ି ନଅଯାଇ ଅଳ୍ପମୂଲ୍ୟରେ ବିକ୍ରୟ କରାଗଲା । ସ୍ତ୍ରୀ ବାଳକ ଉପରେ ଗୃହୀତ ନିଷ୍ଠୁର ଅତ୍ୟାଚାର । ଲାଞ୍ଛନା, ପ୍ରହାରର ଆଉ ସୀମା ରହିଲା ନାହିଁ । ଲୋକେ ଆଉ ଧୈର୍ଯ୍ୟ ଧରି ରହି ପାରିଲେ ନାହିଁ । କିଏ ବନ୍ଧୁଘର ଉଦ୍ଦେଶ୍ୟରେ କେହି ଦୂର ବିଦେ-

ଖିଲୁ, କିଏ ରେଙ୍ଗୁନ୍ କଲିକତା ପଳାଇବାକୁ ଲାଗିଲେ ଯାର ବା ଜିନିଷ-ପତ୍ର ବିଖଣ୍ଡ ଥିଲା, ସେ ଅତି ଶସ୍ତା ଦରରେ ବିକିବାକୁ ଯାଚିଲା । ସମସ୍ତ-ଙ୍କର ତ ସମାନ ଦଶା କିଣିବ କିଏ ? ଗାଁଗଣ୍ଡା ଗୃହଅଡ଼େ ଯେପରି ନିଷ୍ଠୁରତାର ରୁଦ୍ରରୂପ ପ୍ରକାଶ ପାଇଲା । ଗଗନ ପବନ କମ୍ପିଗଲା । ଶିଶୁ ଅବଳା ନିରାଶ୍ରୟ ମାନବ ଶରୀରଧାରୀ ପ୍ରେତାତ୍ମାର କରୁଣ କ୍ରନ୍ଦନରେ । ମାତ୍ର ରକ୍ଷା ନାହିଁ । ପିଶାଚର ସମ୍ମୁଖରେ ଭଗବାନ ମଧ୍ୟ ଯୋଡ଼ ହସ୍ତ । ତା'ର କଠୋର ନିଷ୍ପେଷଣରେ ସେ ମୂକ, ବଧିର । ଯେ ଯାହା ପାଇଲା ସେ ଆଣି ଜମିଦାରଙ୍କ ପାଦତଳେ ଅଜାଡ଼ି ଦେଇ କର ଯୋଡ଼ି କହିଲା, "ହଜୁର, ସର୍ବସ୍ୱ ବିକି ଏତିକି ଦେଲି, ଆଉ କିଛି ନାହିଁ । ତେବେ କେ ନିସ୍ତାର ନାହିଁ । ଆଦେଶ ହୁଏ, ସବୁ ଭୁଟାଅ । ନୋଟେଟ ଠିକ୍ କରି ଦେବ । ସୁରେଶବାବୁ ଭାବନ୍ତି ଏ କେବଳ ଛଳନା । ବେଶି ଚିପିଲେ ଜିନିଷ ସବୁ ଆଦାୟ ଦେବେ । ସେଥିପାଇଁ ଗୃହେ ମଧ୍ୟ କଠୋର ଦଣ୍ଡ ବିଧାନ । କିଏ ବା ତା'ର ପ୍ରତିରୋଧ କରିବ ? ସେ ସାମର୍ଥ୍ୟ କାର ଅଛି, ପ୍ରବଳ ଜମିଦାରର ପ୍ରତିଦ୍ୱନ୍ଦ୍ୱୀ ହେବାକୁ । ଉଦ୍ଦୀପ୍ତ ଲାଳସା ବହ୍ନିକୁ ସାମାନ୍ୟ ଚେଷ୍ଟାରେ ନିର୍ବାପିତ କରିବାକୁ କା'ର ସାହାଯ୍ୟ ସମ୍ବଳ ଅଛି ।

ଏହିପରି ସୁରେଶବାବୁ ନିଜର ନିଷ୍ଠୁର ପେଷଣୀ ଚଳାଇ, ଗ୍ରାମେ ଗ୍ରାମେ ଅଶାନ୍ତି ଅସନ୍ତୋଷର ନିଆଁ ହୁତୁହୁତୁ ଜଳାଇଦେଇ ନିରୀହ ପ୍ରଜାର ରକ୍ତଟୋପା ସଦୃଶ ଅର୍ଥ ରାଶିରେ ଥଳୀ କେତୋଟି ପୂରାଇଲେ ଏବଂ ସେହି ଥଳୀ କେତୋଟି ଧରି ଶଶିପ୍ରଭାଙ୍କୁ ନିଜର ବିଜୟୋଦ୍ଦୀପ୍ତ ମୁଖ ଦେଖାଇବାକୁ ଗ୍ରାମ ଅଭିମୁଖରେ ଫେରିଲେ ।

—ଆଠ—

ସୁରେଶବାବୁ ଯେତେବେଳେ ମଫସଲ ଗସ୍ତରେ ବାହାରିଲେ ସେତେବେଳେ ବୀଣାର ଜ୍ୱରର ମାତ୍ରା ଟିକିଏ କମିଥିଲେ ମଧ୍ୟ, ଜ୍ୱର

ସମ୍ପୂର୍ଣ୍ଣ ଭଲହୋଇ ନଥିଲା । କିନ୍ତୁ ଟଙ୍କାର ଅଭାବ ତାଙ୍କୁ ଆଉ ଘରେ ରଖାଇଦେଲା ନାହିଁ । ବିଶେଷତଃ ଖଜଣା ଦାଖଲ ନହେଲେ ଜମିଦାରୀ ନିଲାମ ହୋଇଯିବ । ସର୍ବୋପରି ଶଶିପ୍ରଭାଙ୍କର ଅଳଙ୍କାର ପ୍ରଭୃତି ପାଇଁ ତାଡ଼ନା ତାଙ୍କୁ ଅଧିକ ବ୍ୟସ୍ତ କରିଦେଲା । ମହାଜନଠାରୁ କରଜ ଦିନୁଁ ଦିନ୍ଦୁ ବେଶି ହେଉଛି । ସେ ବାରମ୍ବାର ଟଙ୍କା ପାଇଁ ଲୋକ ପଠାଇ ଅପମାନ ଦେଉଛି । ସେ ହେତୁ ସୁରେଶବାବୁ ବୀଣାର ତତ୍ତ୍ୱ ନେବାକୁ ଓ ବୈଦ୍ୟ ଡକାଇ ତା'ର ଯଥାମତ ଚିକିତ୍ସା କରାଇବାକୁ ଶଶିପ୍ରଭାଙ୍କୁ କହି ପୋଷ୍ଟ ବିଦାୟ ନେଲେ ।

"ମନ୍ଦ ଖୋଜୁଥିଲା ଯାହା—ବଇଦ କହିଲା ତାହା ।" ଶଶୀପ୍ରଭା ସୁରେଶବାବୁଙ୍କ ଅନୁପସ୍ଥିତିରେ ସ୍ୱୀୟ କାମନା ମେଣ୍ଟାଇବାର ସୁଯୋଗ ଖୋଜୁଥିଲେ । ଏଥିରେ ତାଙ୍କର ହୃଦୟ ଆନନ୍ଦରେ ନାଚି ଉଠିଲା । କାରଣ ଗଲାବେଳେ ସୁରେଶବାବୁ ମଧ୍ୟ କହିଗଲେ ଯେ ନବୀନ ତ ରହୁଛି । ସେ ବୈଦ୍ୟଙ୍କୁ ଡକାଡକି କରିବ ଓ ଘରର ଯାବତୀୟ ହାଲଚାଲ ବୁଝିବ । ଶଶିପ୍ରଭା ବିଦାୟ ବେଳେ ଛଳନାଶ୍ରୁ ଦୁଇଟୋପା ଗଡ଼ାଇ ଦେଇ କହିଲେ "ଏ ଅବସ୍ଥାରେ ତୁମେ ଆଉ କେତେଦିନ ପରେ ଯାଇଥିଲେ କ'ଣ ଭଲ ହୋଇ ନ ଥାନ୍ତା ? ଝିଅର ଦେହ ଏପରି ।" ସୁରେଶବାବୁ ଅନେକ ପ୍ରବୋଧ ଦେଇ, ନାନା ଅଭାବ ଅସୁବିଧା ଦେଖାଇ ଚାଲିଗଲେ ।

ଏଥର ନବୀନ କୌଣସି ଅସୁବିଧା ବଶତଃ ଜମିଦାରଙ୍କ ସହଯାତ୍ରୀ ହୋଇପାରି ନ ଥିଲା । ତାକୁ ମଧ୍ୟ ସୁରେଶବାବୁଙ୍କ ଆଦେଶ ମତେ ଜମିଦାର ଘରର ତତ୍ତ୍ୱ ନେବାକୁ ପଡ଼ୁଥିଲା । ଫଗୁଖେଳ ଦିନ ଯେଉଁ ଯୁବକ ଯୁବତୀ ଦୁଇଟିଙ୍କର ପ୍ରଥମ ପ୍ରଣୟ ଜାତ ହୋଇଥିଲା, ସେ ଦୁଇଟିଙ୍କ ମଧ୍ୟରେ ଜଣେ ଏହି ନବୀନ, ଅନ୍ୟ ଜଣକ ଶଶିପ୍ରଭା । ଉଭୟଙ୍କ ହୃଦୟ

ମଧ୍ୟରେ ଯେଉଁ ଅତୃପ୍ତ ବାସନା ଜାଗ୍ରତ ହୋଇଥିଲା, ତା'ର ମେଣ୍ଟନର ମିଳିଲା ଗୋଟାଏ ଅପୂର୍ବ ସୁଯୋଗ ।

ଶଶିପ୍ରଭା ସୁରେଶବାବୁଙ୍କ ପଛେ ପଛେ ନବୀନକୁ ଡକାଇ ପଠାଇଲେ । ନବୀନ ଯାଇ ବାହାର ଘରେ ଆଦେଶ ପ୍ରତୀକ୍ଷାରେ ରହିଲା । ମାତ୍ର ଶଶିପ୍ରଭାଙ୍କଠାରୁ ଭିତରକୁ ଯିବା ସକାଶେ ସାଦର ନିମନ୍ତ୍ରଣ ଆସିଲା । ନବୀନ ବଡ଼ ସନ୍ତର୍ପଣରେ ଭିତରକୁ ଗଲା । ଶଶିପ୍ରଭା ସ୍ମିତ ମୁଖରେ ଡ଼ାକି ନେଇ ଭିତର ଘରେ ବସାଇଲେ ଏବଂ ତାମ୍ବୁଲାଦି ଦ୍ୱାରା ଚର୍ଚ୍ଚା କରିବାକୁ ଲାଗିଲେ । ଏହି ହେଲା ନବୀନର ଅନ୍ଦର ମହଲରେ ପ୍ରଥମ ପ୍ରବେଶ, ଆଉ ଜମିଦାରଙ୍କ ଗୃହିଣୀଙ୍କ ସଙ୍ଗେ ପ୍ରଥମ ଆଳାପ ଓ ପରିଚୟ । ଯଦିବା ନବୀନର ତରୁଣ ପ୍ରାଣରେ ଶଶିପ୍ରଭାଙ୍କ ଦର୍ଶନ ଦିନୁଁ ଦିନ ପ୍ରଣୟର ଗୋଟିଏ ମଧୁମୟ ମୂର୍ଚ୍ଛନା ଖେଳାଇଦେଉଥିଲା, ତଥାପି ତା'ର ଅନ୍ତରରେ ଥିଲା ଗୋଟିଏ ଅଜ୍ଞାତ ଭୟ ଓ ସନ୍ଦେହ । ଅପରିଚିତା ଶଶିପ୍ରଭାଙ୍କଠାରେ ପ୍ରେମ ଆକାଙ୍କ୍ଷା ତା ମନରେ ଗୋଟାଏ ଦ୍ୱୈଧଭାବ ଆଣୁଥିଲା । ମାତ୍ର ଶଶିପ୍ରଭାଙ୍କ ରୂପର ମୋହିନୀ ଛଟା, ଅଯାଚିତ ଆଦର ତା'ର ସାହସ ଓ ଆସକ୍ତି ବଢ଼ାଇଦେଲା । କ୍ରମେ ତା'ର ମନରେ ଆନ୍ଦୋଳନ ପ୍ରବଳ ହୋଇ-ଉଠିବା ସଙ୍ଗେ ସଙ୍ଗେ ତା'ର ଉଦ୍‌ବିଗ୍ନ ମନରେ ପ୍ରେମସ୍ପୃହା ଆହୁରି ସତେଜ ହୋଇ ଯାଉଥିଲା । ମାତ୍ର ଶଶିପ୍ରଭା ଯେତେବେଳେ କଥାରୁ ପ୍ରେମାଳାପର ସୂଚନା ଦେଲେ; ସ୍ମିତ ହାସ୍ୟରେ, ନୟନର କଟାକ୍ଷରେ, ପ୍ରେମଗୃଢ଼ଭାବପୂର୍ଣ୍ଣ କାକୁତିରେ ତାକୁ ପ୍ରେମଜାଲରେ ଛନ୍ଦି ପକାଇଲେ, ସେତେବେଳେ ନବୀନ ଆଉ ନିଜକୁ ଅଧୀନରେ ରଖି ପାରିଲା ନାହିଁ । ଶଶିପ୍ରଭା ଯେପରି ତା'ରି ଉଦ୍ଦେଶ୍ୟରେ ମନ, ଧ୍ୟାନ, ପ୍ରାଣ, ଅର୍ପି-ଦେଇଛନ୍ତି—ନବୀନ ତାହା ବୁଝି ପାରିଲା । ପ୍ରେମ ଦେଶ କାଳ ପାତ୍ର ଯୋଗ୍ୟ ଅଯୋଗ୍ୟ କିଛି ବୁଝେନାହିଁ । ରୂପର ଆଲୋକ ଶିଖାତଳେ ଯୌବନର ତୀବ୍ର ଉତ୍ତେଜନାରେ ଏହିପରି ଶତ ଶତ ତରୁଣ ତରୁଣୀ

ନର୍ତ୍ତ୍ୟ ପତଙ୍ଗ ସଦୃଶ ନିପତିତ ହେଉଅଛନ୍ତି । ଚପଳ ନବୀନ ଓ ବିଳାସବତୀ ଶଶିପ୍ରଭାଙ୍କର ସାଧ୍ୟ କାହିଁ ଏଥିରୁ ମୁକ୍ତ ହେବାକୁ ? କ୍ରମେ ଦୁହିଁଙ୍କ ଦିନ ପ୍ରଣୟ ଗାଢ଼ତର ହେଲା । ଶଶିପ୍ରଭାଙ୍କର ଉତ୍କଟ ବାସନା-ବହ୍ନି ଲାଭକଲା ଉପଯୁକ୍ତ ଇନ୍ଧନ ।

## —ନଅ—

ଯେଉଁବେଳେ ସୁରେଶବାବୁ ଗ୍ରାମେ ଗ୍ରାମେ ଅଶାନ୍ତି ଅସନ୍ତୋଷର ନିଆଁ ଜଳାଇଦେଇ ପ୍ରଜାଙ୍କ ରକ୍ତ ଶୋଷଣରେ ବ୍ୟାପୃତ, ନିଃସ୍ୱ ପଲ୍ଲୀବଧୂର, ସରଳ ଶିଶୁ ବୃଦ୍ଧଙ୍କର ଲୋତକଧାରାରେ ପଲ୍ଲୀବକ୍ଷ କର୍ଦ୍ଦମିତ, ହାହାକାରରେ ଗଗନମଣ୍ଡଳ ମୁଖରିତ, ଏଣେ ସେତେବେଳେ ସୁରେଶବାବୁଙ୍କ ଭବନ-ରଙ୍ଗମଞ୍ଚର ଏକ ପାର୍ଶ୍ୱରେ ନବୀନ ଶଶିପ୍ରଭାଙ୍କର ଅବୈଧ ପ୍ରଣୟାଭିନୟ; ଅନ୍ୟ ପାର୍ଶ୍ୱରେ ହୃଦୟବିଦାରୀ ହାହାମୟ କରୁଣଦୃଶ୍ୟର ଖେଳା ଯୁଗପତ୍ ଚାଲିଅଛି । ସପ୍ତମ ବର୍ଷୀୟା ବାଳିକା ବୀଣା ରୋଗଶଯ୍ୟାରେ ସୁପ୍ତା । ନେତ୍ରରୁ ଅବିଶ୍ରାନ୍ତ ନୀରବ ଅଶ୍ରୁଧାରା ଝରୁଛି । ତା'ର କରୁଣ କ୍ରନ୍ଦନ ଧ୍ୱନି, ଅଟ୍ଟାଳିକାର ଗୃହର ଭିତ୍ତି ବ୍ୟତୀତ ଆଉ କେହି ଶୁଣୁ ନାହାନ୍ତି । ଅଜ୍ଞାତଭାବେ ବାଳିକାମୁଖରୁ ସ୍ନେହମୟୀ 'ମା' ନାମ ବାହାରି ପଡୁଛି । ମାତ୍ର ଉତ୍ତର ନାହିଁ, ପାଖରେ ଆଦର ଆଶ୍ୱାସନା କରିବାକୁ କେହି ନାହାନ୍ତି ।

ସୁରେଶବାବୁ ଗସ୍ତକୁ ଗଲାଦିନୁଁ ମାତୃହୀନା ବୀଣାଟିର ପ୍ରକୃତ ତତ୍ତ୍ୱ କେହି ନେଇନାହାନ୍ତି । ସେ ଗଲାବେଳେ ବୀଣାର ଜ୍ୱର ଟିକିଏ କମିଥିଲା । ସେ ଶଶିପ୍ରଭାଙ୍କୁ କେତେକରି କହିଗଲେ, ବୈଦ୍ୟ ଡକାଇ ବୀଣାକଥା ବୁଝିବାକୁ, ପଥ୍ୟ ପ୍ରଭୃତିର ସୁବ୍ୟବସ୍ଥା କରିବାକୁ । ନିଜେ ବ୍ୟବସ୍ଥା କରିବା ଦୂରେ ଥାଉ, ନିଜେ ବୈଦ୍ୟଆସି ଥରେ ଦିଥର ଦେଖିଗଲେ ମଧ୍ୟ ଶଶିପ୍ରଭା ଆଡ଼ ଆଖିରେ ଟିକିଏ ସୁଦ୍ଧା ଚାହିଁଲେ ନାହିଁ । ସେ ଯଦି କୌଣସି ଔଷଧ ଅଣାଇ ସିଦ୍ଧ କରିଦେବାକୁ କହିଯାନ୍ତି କିମ୍ବା ଭାତ

ନ ଦେଇ ବାର୍ଲି କମ୍ବା ସାଗୁର ପଥ୍ୟ ଦେବାକୁ ପରାମର୍ଶ ଦିଅନ୍ତି କିନ୍ତୁ ଔଷଧ ମୂଳରୁ ଆସେନାହିଁ । ସାଗୁ ପରିବର୍ତ୍ତେ ପଖାଳଭାତ ବାଢ଼ିଦିଅନ୍ତି । କହନ୍ତି ମାଇକିନିଅ ଝିଅପାଇଁ ସାଗୁ ଖୋଜା ହେଉଛି । ବୀଣାକୁ ତାହା ଖାଇବାକୁ ମଧ୍ୟ ଭଲଲାଗେ । ଅବୋଧ ବାଳିକାଟି ସେ, କିପରି ବା ବୁଝି ପାରିବ, ଏଥିରେ ତାର ଭଲ ମନ୍ଦ କ'ଣ ଅଛି ? ଔଷଧ ଓ ପଥ୍ୟର ଅଭାବରୁ ରୋଗ ଦିନୁଦିନ ବଢ଼ିବାକୁ ଲାଗିଲା । ସୁତରାଂ ବୈଦ୍ୟ ଯେତେବେଳେ ଦେଖିଲେ ତାଙ୍କ କହିବା ମୁତାବକ ଔଷଧ ବା ପଥ୍ୟ ଦିଆ ଯାଉନାହିଁ କିମ୍ବା ତାଙ୍କ ଆସିବାରେ ଶଶିପ୍ରଭାଙ୍କର କୌଣସି ଆଗ୍ରହ ନାହିଁ—ସେତେବେଳେ ସେ ତାଙ୍କର ଆସିବା ମଧ୍ୟ ବନ୍ଦ କଲେ । ନିରୀହା ବୀଣା କପାଳ ଆଦର ନୀରବରେ ପଡ଼ି ରହିଲା । ଶଶିପ୍ରଭା ତ ନିଜର ଦୁର୍ବାର ଲାଳସା ମେଣ୍ଟାଇବାରେ ବ୍ୟସ୍ତ । ନବୀନର ମନଖୁସି କରିବା, ଭାବଭଙ୍ଗି ଆଳାପରେ, ଅର୍ଥ ଓ ରୂପର ପ୍ରଲୋଭନରେ ତାକୁ ବଶୀଭୂତ କରିବା ତାଙ୍କର କାମ୍ୟ, ବୀଣାର ତତ୍ତ୍ୱନେବାକୁ ତାଙ୍କର ଅବସର କାହିଁ ? ନବୀନ ଶଶିପ୍ରଭାଙ୍କ ମୋହରେ ମନ୍ତ୍ରମୁଗ୍ଧ । ବୀଣାର କଥା ବୁଝିବାକୁ ସେ ଦେଖୁଛନ୍ତି ଶଶିପ୍ରଭା ସମ୍ପୂର୍ଣ୍ଣ ଉଦାସୀନା । ସେ ମଧ୍ୟ ତାଙ୍କ ମିଳନକୁ ପରମସୌଭାଗ୍ୟ ମନେକରି ସୁରେଶବାବୁଙ୍କୁ ହେୟ ମନେ କରିଅଛି । ଉଭୟ ଉଭୟଙ୍କର ରୂପଯୌବନ ମଦିରାପାନରେ ଅନ୍ଧ । ବିଶେଷତଃ ଶଶିପ୍ରଭା ବୀଣାପ୍ରତି ତାଙ୍କର ମାୟା ମମତା ତୁଟାଇଦେଇ ରାକ୍ଷସୀ-ହୃଦୟ ନେଇ କି ଏକ ମୋହରେ ଭାସୁଛନ୍ତି । ବୀଣାଟିର ସ୍ମୃତି କ୍ଷଣକପାଇଁ ତାଙ୍କର ମନରେ ହେଲେ ପଡ଼ୁଥାନ୍ତା ! ଦିନରାତି ସେ ନବୀନର ମନୋରଞ୍ଜନରେ ବ୍ୟସ୍ତା ।

ଅହା ହତଭାଗିନୀ ବୀଣା । ବସ୍ତୁସ୍ୱର ପାଣି ପାଣି ବୋଲି କେତେବେଳେ କଣ୍ଠ ଶୁଖିଯାଉଛି, ମାତ୍ର ଶୁଣିବାକୁ କେହିନାହିଁ । ଶୁଷ୍କ ଓଷ୍ଠ ଦୁଇଟିକୁ ନୀରସ ଜିହ୍ୱାରେ ଘୃଷ୍ଟମକାଇ ସେ ଘରର ଶୂନ୍ୟ ଛାତକୁ

ପୁହିଁ ରହିଛ । ହାତଗୋଡ଼ ବାନ୍ଧୁଛି, କର ଲେଉଟାଇବାକୁ ଶକ୍ତି ନାହିଁ । ଉଠିବାକୁ ଚେଷ୍ଟା କରୁଛି, ପାରୁନାହିଁ । ନୀରବରେ ଲୁହରେ ଶେଯ ତନ୍ତାଇଦେଇ ପଡ଼ିରହୁଛି । ମା, ମା, ବୋଲି କରୁଣ ଚିତ୍କାରରେ ଘରର ଛାତ ଯେପରି କାନ୍ଦି ଉଠୁଛି । ନିଷ୍ଠୁର ଶଶିପ୍ରଭାଙ୍କ ପାଷାଣ ହୃଦୟ ଟିକିଏ ସୁଦ୍ଧା ତରଳୁ ନାହିଁ । ଘରେ ଦାସ ଦାସୀ ଅଛନ୍ତି । ଶଶିପ୍ରଭାଙ୍କ ଭୟରେ କେହି ପାଖରେ ପଶିପାରୁ ନାହାନ୍ତି । ତା'ର କରୁଣ କ୍ରନ୍ଦନ ଶୁଣି ସମୟେ ସମୟେ ଗୃହର ବାଳକ ପାଖରେ ବସିଲେ 'ନିକମା ହୋଇ ବସିଛୁ' ବୋଲି କହି ଶଶିପ୍ରଭା ଘଉଡ଼ାଇ ଦିଅନ୍ତି, କମ୍ବା ଅନ୍ୟକାର୍ଯ୍ୟରେ ଲଗାଇଦିଅନ୍ତି । ବୀଣାର କ୍ରନ୍ଦନ, ଚିତ୍କାର ତାଙ୍କୁ ବିରକ୍ତିକର ବୋଧହୁଏ । 'ସେ ପୋଡ଼ାମୁହିଁ ଛଉଳ କାଢୁଛି' ବୋଲି କହି ଯଥେଷ୍ଟ ଗାଳିଦିଅନ୍ତି । ନିର୍ମାହା ବୀଣାର କାନରେ ତିରସ୍କାର ବାଜିବାମାତ୍ରେ ସେ ରୋଗର ବ୍ୟଥା ଚାପି ରଖି ଭୟରେ ଚୁପ ହୋଇଯାଏ; ତା'ର ଦେହ ଥରିଉଠେ । ଦୁର୍ବଳା ବୀଣାଟି ଖାଦ୍ୟ ଔଷଧର ଅଭାବରୁ ଅତି ଦୁର୍ବଳା ହୋଇ ଯାଇଛି, ନିଃଶ୍ୱାସ ମାରିବାକୁ ତାକୁ କଷ୍ଟ ବୋଧ ହେଉଛି । ସୁରେଶବାବୁ ବଡ଼ ଆଡ଼ମ୍ବରରେ, ଉତ୍ସାହରେ, କେତେ ଆଶା ଧରି ଗସ୍ତରୁ ଫେରିଲେ । ମାତ୍ର ସେ ଯେତେବେଳେ ବୀଣାକୁ ଦେଖିଲେ ତାଙ୍କର ମନଟା ବିଷଣ୍ଣ ହୋଇଗଲା । ସେ ବୋଧ କଲେ ବୀଣାର ଅବସ୍ଥା ଅତି ଶୋଚନୀୟ ।

ସଙ୍ଗେ ସଙ୍ଗେ ବୈଦ୍ୟଙ୍କୁ ଡକାଗଲା । ବୈଦ୍ୟ ଆସି ହାତ ଦେଖିଲେ କହିଲେ, "ଏ ସାନ୍ନିପାତିକ ଜ୍ୱର । ଔଷଧ ଆସିଲା, ଡାକ୍ତର ମଧ୍ୟ ଅନ୍ୟ ସ୍ଥାନରୁ ଅଣାଗଲେ, ତାଙ୍କର ଉପଦେଶ ମତେ ନାନା ଔଷଧ, ପଥ୍ୟ ପାଇଁ ଫଳ କଟକରୁ କଣା ହୋଇ ଆସିଲା । ପଦ୍ମ ମଧ୍ୟ କଟକରୁ ଆସିଲା । ଶୁଶ୍ରୂଷା ଚାଲିଲା । ସେତେବେଳକୁ ବୀଣାର ଆଉ ଚୈତନ୍ୟ ନ ଥାଏ । କେବଳ ବେଳେବେଳେ କ୍ରନ୍ଦନ ଧ୍ୱନି ଶୁଣା ଯାଉଥାଏ । ସବୁ ଚେଷ୍ଟା ବୃଥା ହେଲା । ଦିନେ ପାହାନ୍ତିଆ ପ୍ରହରରେ ସେହି ଅସ୍ଥିପିଞ୍ଜରସାର

ଶରୀରରୁ ସେହି କ୍ରନ୍ଦନ ଧ୍ୱନି, କ୍ଷଣିକ ସ୍ପନ୍ଦନ କାହିଁ ମିଳାଇ ଗଲା । ସୀତାର ନାମ ଚିରକାଳ ପାଇଁ ଲୁପ୍ତ ହେଲା ।

ସୁରେଶବାବୁଙ୍କ ମନରେ ଶାନ୍ତିଙ୍କର ଶେଷ ବାଣୀ ଯେପରି ହଠାତ୍ ଝଲସି ଉଠିଲା । ଅଜ୍ଞାତରେ ତାଙ୍କର ଗଣ୍ଡ ଅଶ୍ରୁପ୍ଲାବିତ ହେଲା । ପଦ୍ମ ମଧ୍ୟ ବହୁତ କାନ୍ଦିଲା । ତା'ର ଶେଷ ଆକର୍ଷଣୀଟି ଯେପରି କେହି ଲୁଟିଇ ଦେଲା । ଲୋକଦେଖଣା ପାଇଁ ଶଶିପ୍ରଭା ସଙ୍ଗେ ସଙ୍ଗେ ଉଚ୍ଚ କଣ୍ଠରେ କ୍ରନ୍ଦନରାଗିଣୀ ଛୁଟାଇ ଦେଲେ, ମାତ୍ର ମନରେ ଭାବିଲେ ଆଜି ଗୋଟାଏ କଣ୍ଟକ ଦୂର ହେଲା ।

## —ଦଶ—

ଗାଁର ପୋଖରୀକୂଳ, ନଈତୁଠ ଗ୍ରାମ୍ୟ ସ୍ତ୍ରୀମାନଙ୍କର ମିଳନର ଗୋଟିଏ ସ୍ଥଳ । ନାନା ସମାଲୋଚନାର ଅଡ୍ଡା । ଏହି ସମାଲୋଚନା ଏକାବେଳକେ ଯେ ଅସାର, ଭିତ୍ତିହୀନ ତା' ନୁହେଁ । ଏଥିରେ ପଲ୍ଲୀ-ଜୀବନର ଗୋଟାଏ ସରଳ ଜୀବନ୍ତ ଇତିହାସ ପ୍ରଚ୍ଛନ୍ନ ଥାଏ । ସେଦିନ ନଈର ଗାଧୁଆ ତୁଠରେ ଶିଶୁଆ ମା' ସୁନ୍ଦରୀ ଅପାର କାନରେ ଚୁପ୍ ଚୁପ୍ କ'ଣ ଦି' ପଦ କହିଦେଲା । ସୁନ୍ଦରୀ ଅପା ମୃଦୁ ହସାଟାଏ ଦେଇ କହିଲା, "ହିଁ ମ, ବଡ଼ଘର ବୋଲି ନାଁ ପଡୁଛି; ଅଡ଼େଇକୁଲା ଶାଗ ସିଝୁଛି" ସବୁଠିରେ ଧାପଡଲେ ଅନ୍ଧାରଲୋ ଭଉଣୀ, ଧାପଡଲେ ଅନ୍ଧାର । ଛୋଟ ଲୋକ ଘର, ପାଠକ କୁଳ ହୋଇଥିଲେ ଏତେ-ବେଳକୁ କେତେ କ'ଣ ହୋଇ ଯାଆନ୍ତାଣି ।" ଶିଶୁଆ ମା, କହିଲା, "ଭୁନିହ, ଭୁନିହ, କିଏ କେଉଁଠି ଶୁଣିଲେ ଆଉ ଚେରପାରୁ ରହିବ ନାହିଁ । ମା' ଲୋ ସେ ଯେଉଁ ନୂଆ ସାଆନ୍ତାଣୀ, ତାଙ୍କର ଗୋଡ଼ ତ ଆଉ ତଳେ ପଡ଼ିବାକୁ ନାହିଁ । ମୁଁ କୁଆଁ ରପୁନେଇଁ ଦିନ ପିଲାଟା ପାଇଁ ତୋରଣି ମୁନ୍ଦେ ମାଗିବାକୁ ଯାଇଥିଲି । ଟିକିଏ ଆଉଆଖିରେ ହେଲେ ଗୃହିଁ ଦେଇ ଥାନ୍ତେ । ମୁଁ ତ ସହଜେ ପର, ତାଙ୍କ ନିଜର କେଉଁ ଛଅଟା

ବା ନଅଟା ଥିଲେ । ମରି ଆଉ ପୁରରେ ରହୁଲଣି, ଲୁଗା ଖଣ୍ଡେ ପାଇଁ ଅଳି ଲଗାଇଲା ବୋଲି ତାକୁ ଗୋଟାଏ ବଧା ମାରିଦେଲେ । ସେ ଘଡ଼ଏ-ଯାଏଁ କାନ୍ଦି ପାରିଲା ନାହିଁ । ମୁଁ କଅଁ-ଲଗିଥିଲି ଯେ, କହିଦେଲି, ସାଆନ୍ତାଣୀ, ଇମିତେ ମାରନ୍ତୁ, । ପିଲାଟିର ଜୀବନ ବାହାରିଯିବ । ଏତିକି କହୁ ନ କହୁଣୁ ହାବକାରେ କଅଁ ଲଗିଲାପରି ମୋତେ ମା'ରି ନ ମାରି କଲେ—ଛତରଖାଇ, ଡାହାଣୀ ବୋଲି କେତେ ଗାଳି ଦେଇ ସେଆଡ଼ୁ ଘଉଡ଼ି ଆଣିଲେ । ସତକୁସତ ତାକୁ ସିମିତେ ମାରି ମାରି ମାରିପକେଇଲେ ଲେ । ମରି ଯାଇଛି, ଖଲାସ ପାଇଛି । ଆଉ ସାଆନ୍ତାଣୀ କୁଅଡ଼େ ଗଲେ ଲେ । ସରଗର ଦେବୀ ସେ, କାଚ ସିନ୍ଦୂର ନେଇ ସତୀ ଠାକୁରାଣୀ ଚାଲିଗଲେ । ଏ ଅଲକ୍ଷଣି ଅସିଲା ଦିନୁଁ ସାଆନ୍ତଙ୍କ ଘର ଚୂନା ହେଲା ।"

ସୁନ୍ଦରୀ ଅପା କହିଲା, "ଖାଲି ସେତିକି କଲେ ଭଉଣି ! ଯାଙ୍କ ଯୋଗୁଁ ସାଆନ୍ତ ମଧ ବଦଳି ଗଲେଣି । ଯିମିତେ ସାଆନ୍ତାଣୀ, ସିମିତେ ସାଆନ୍ତ । କେଉଁଟା ଦିନ ଭିତରେ କ'ଣ ହୋଇଗଲେ, ଲେ ମା । ଗର୍ଭିଣୀ ଗାଈ ଦେଖିଲେ ବାଂଟ ଛାଡ଼ି ପଳାଉଛୁ । ଯେଉଁ ଦପ୍ତର ତାଙ୍କର ଲେ ମା । ସେଦିନ ପୁଅ ଦୋଅଡ଼ ପାଇଟିଅ ବେଳେ କାମରୁ ଅସି ତୋରାଣି ଟିକିଏ ପିଇବାକୁ ବସିଛି କି ନା, ସେ ଅଡ଼ୁ ଜମିଦାରଙ୍କ ଚକରୀ ଅସି ଡ଼ାକ ଦେଲା—'ଶିରିଅ, ହବେ ଶିରିଅ ।' ମୁଁ ଦାଣ୍ଡପଟକୁ ବାହାରି ପଡ଼ି କହିଲି, "କ'ଣ, କାହିଁକି ପୁଅକୁ ଡାକୁଛ ?" ସେ ସେଆଡ଼ୁ ଏଡ଼େ ପାଟି କରି କହିଲା, "ପୁଅକୁ ବେଗେ କହିଦେ, ଖଜଣା ଦେବାକୁ ଅଜଯାଏ ମନ ହେଉନାହିଁ ।" ମୁଁ କେତେ ନେହୁରି ହୋଇ କହିଲି, ରହ ବାବୁ ଟିକିଏ ସେ ତୋରାଣି ମୁନ୍ଦାକ ପିଇଦେଉ । ଅମେ କ'ଣ ଖଜଣା ବାକି ରଖିବୁଁ । ତାଳ ଖଣ୍ଡେ ଧରି ବନ୍ଧା ପକାଇବାକୁ ସକାଳ ଓଳି ଯାକ ବୁଲି ଅସିଲି ଯେ ଗୁରିଅଣା ହେଲେ ପଇସା ମିଳିଲା ନାହିଁ । ଘରେ ତ କିଛି ନାହିଁ, ପାଇଟି ପଯତ ମିଳୁନାହିଁ । କେଉଁଦିନ ମିଳିଲେ ତ ତାକୁ ଢୋକି

ପାଣି କରି ଭୂଣ୍ଡରେ ଦେଉଛୁଁ । କ'ଣ କରିବୁଁ, ତା'ର ଯେଉଁ ବହପ ଲୋ; ବୋଇଲା, ଜମିଦାରଙ୍କ ହୁକୁମ 'ବସିବା ସ୍ଥାନରୁ ଧରିନେବାକୁ ।' ତାଙ୍କ ଉପରେ ତ ଡାକ ଛାଡ଼ିଲା । ପୁଅ ଆଉ ତୋରାଣି ପିଇବ କ'ଣ ? ଜମିଦାରଙ୍କ ନାଁ ଶୁଣି ତା' ପିଲେଇ ପାଣି । ଆସି ତା' ସଙ୍ଗେ ସଙ୍ଗେ ଗଲା । ମୁଁ ମଧ ତା ପଛେ ପଛେ ଗଲି । ଜମିଦାର ଯିମିତ ଦେଖିଦେଇ-ଛନ୍ତି, କହିଲେ, "ଶଳାକୁ ବାନ୍ଧ" ଚକର ଥିଲା ଯେ ଗୋଟାଏ ଧକ୍କା ପକାଇ ଦେଲା ଯେ ପୁଅ ଡନଗଡ଼ା ଦେଇ ତଳେ ପଡ଼ିଗଲା । ମୁଁ ପୁଣି ମୁଣ୍ଡିଆ ମାରି ତାହିଁ ଆରଦନ ଦେବାକୁ କହିପୋଛି ପୁଅକୁ ମୁକୁଳେଇ ଆଣିଲି । ପୁଣି ସଙ୍ଗେ ସଙ୍ଗେ କଂସା ଖଣ୍ଡେ ବନ୍ଧକ ପଇସା ଦେଇ ଆସିଲି । ମୋର ଖଜଣା ଦ'ଅଣା, ତା' ଜାଗାରେ ଗୁରିଅଣା ନ ନେଇ ପରି ଛାଡ଼ିଲେ ନାହିଁ ।"

ଶିରିଆ ମା' "କହିଲା, ସେ କଥା କହନା ଲୋ ଭଉଣୀ କାଲି ପରି ଖଜଣା ଲାଗି ସିମିତେ ଆମ ଲଣ୍ଡି ଗାଈଟାକୁ ବାନ୍ଧି ନେଲେ । ପୁଣି ଝିଅ ବେକର କଣ୍ଠି, ହାତର ଖଡ଼ୁ ସୁନା ବଣିଆ ପାଖରେ ବନ୍ଧକ ପଇସା ଦେବାରୁ ଗାଈଟା ଫେରାଇ ଆଣିଲି । ପୁଣି ଖାଲି କ'ଣ ଖଜଣା ? ଖଜଣାର ସୁଧ, ମାଗଣ ତଣ୍ଡ କେତେ ହାଟରେ କେତେ କ'ଣ ନେଉ-ଛନ୍ତି । ଯିମିତ ଗରିବଙ୍କ ତଣ୍ଟି ଚପି ନେଉଛନ୍ତି, ସିମିତ ଛାଡ଼ ଛାଡ଼ ଯାଉଛି ଯେ । ଅହା, ଆର ସାଆନ୍ତାଣୀଙ୍କୁ କହିଲେ, ସେ ସାଆନ୍ତଙ୍କୁ ବୁଝାଇ ଶୁଝାଇ ଦେଉଥିଲେ । ନୋହିଲେ ହାତରୁ ଗୁରି'ଣା ଅଠ'ଣା ଦେଉ-ଥିଲେ । ସାଆନ୍ତ ତାଙ୍କ କଥା ରଖୁଥିଲେ । ଏ ଯେଉଁ ନୂଆ ସାଆନ୍ତାଣୀ, ୟାଁ'ଙ୍କୁ କହିଲେ, ଏ'ତ ନାଗସାପ ପରି ସେଅଡ଼ୁ ଖାଇ ଗୋଡ଼ାଉଛନ୍ତି ।"

ଏ ସମୟରେ ଗୌରୀ ଅମ୍ବମୂଳରୁ ଡାକିଲା, "ସୁଦେଈ ଅପା ! କ୍ଷା ଲୋ, ଅଜ' ତ ଭାରି ଗପ ଲାଗିଛି ।" ଦୁହେଁଯାକ ଟିକିଏ ଅପ୍ରସ୍ତୁତ ହେଲା ପରି ଜଣାଗଲା । ଶିରିଆ ମା ହଠାତ୍ କହିଲା, "ହଁ ଲୋ ଗଉରି, ସୁଦେଈ

ଅପାକୁ ତା ଝିଅ କଥା ପଗ୍ଣୁରୁଥିଲ । ତୋ'ର ତ ସବୁ ଭଲ ? ତୋ'ର କେଉଁ କଥା ଅଭାବ ଯେ, ସାଆନ୍ତ ଯେପରି ପାଇଛୁ, ସାଆନ୍ତାଣୀ' ତ ତହୁଁ ବଳି ।" ଗୌରୀ ହିକିଏ ହସି କହିଲା, "ହଁ ଲେ ନାନ, ଭଲ କିଏ ଭୋଗୁଛି, ମନ୍ଦ କିଏ ଭୋଗୁଛି, ସବୁ ଏ ଦେହକୁ' ତ !" ଏହା କହି ସେ ନାଇ ତୁଠକୁ ଗ୍ଲଲା । ସୁନ୍ଦରୀ ଅପା ଓ ଶିରଆ ମା ମଧ୍ୟ ତର ତର ହୋଇ ଗାଧୋଇବାକୁ ବାହାରିଲେ । ଗୌରୀ ଜମିଦାରଙ୍କ ଘରର ବନ୍ଧୁଦନର ଗ୍ଣକରାଣୀ । ସେଥିପାଇଁ ତାକୁ ଦେଖି ଏ ଉଭୟେ ଭୟରେ ଅଲାପ ବନ୍ଦ କରି ଅନ୍ୟ ଆଡ଼େ ଗ୍ଲଗଲେ ।

## —ଏଗାର—

ସମୟ କାହାରି ପ୍ରତି ଭ୍ରୂକ୍ଷେପ ନ କରି ଦିନ, ମାସ, ବର୍ଷ ଯେନ ଗ୍ଲଲଛି । ଏହିପରି ବାଣା ମରିବାର ଆଜକୁ ଦୁଇବର୍ଷ ଗ୍ଲଲଗଲାଣି । ସୁରେଶବାବୁଙ୍କର ଆଉ ପୂର୍ବର ଦୀପ୍ତି ନାହିଁ । ସହଜେ ବୟସବୃଦ୍ଧି ସଙ୍ଗେ ଜରା ଓ ଦୁର୍ବଳତା ଆସିଛି । ତା'ପରେ ଖଜଣା ଅନାଦାୟ ହେତୁ ସରକାର ଜମିଦାରୀ ନିଲାମ କରିବାକୁ ବସିଛନ୍ତି । ମହାଜନ ମଧ୍ୟ ମୋକଦ୍ଦମା କରିଛି । ଏହା ବ୍ୟତୀତ ନାନାଅଡ଼ୁ ନାନା ଦୁଶ୍ଚିନ୍ତା ତାଙ୍କୁ ଅସ୍ଥିର କରିପକାଉଛି । ଏ ଗୋଲକ ଧନ୍ଦାରେ ପଡ଼ି ସେ କିଂକର୍ତ୍ତବ୍ୟ-ବିମୂଢ଼ । ବିଶେଷତଃ ମନୁଷ୍ୟ ଦୁର୍ବଳ ହେଲେ ଅନ୍ୟମାନେ ତା ଉପରେ ସୁଯୋଗ ନେବାକୁ ଚେଷ୍ଟା କରନ୍ତି । ଶଶିପ୍ରଭା ଏ ଅବସ୍ଥାରେ ନିଜର ଗୁପ୍ତ ପାପ ପ୍ରଣୟକୁ ପ୍ରକାଶ୍ୟ ପ୍ରଣୟରେ ପରିଣତ କରିଅଛନ୍ତି । ନବୀନ ମଧ୍ୟ ସୁରେଶବାବୁଙ୍କ ପ୍ରତି ପୂର୍ବର ଭୟ, ସଙ୍କୋଚ ନ ରଖି ଶଶିପ୍ରଭାଙ୍କସହ ସେହି ପ୍ରଣୟରେ ପ୍ରକାଶ୍ୟ ଭାବରେ ମାତିଛି । ଉଭୟଙ୍କର ପ୍ରେମାଳାପ ଗ୍ଲଲଥିବା ବେଳେ ସୁରେଶବାବୁଙ୍କର ପ୍ରବେଶ-ନିଷେଧ । ଲୋକ-ଲଜ୍ଜାକୁ ଏଡ଼ିବା ଭୟରେ ହେଉ ବା ନିଜର ଭବିଷ୍ୟତ ମଙ୍ଗଳ ପାଇଁ ହେଉ ପ୍ରତାପୀ ସୁରେଶବାବୁ ରୁଦ୍ଧବୀର୍ଯ୍ୟ ସର୍ପତୁଲ୍ୟ ହୀନବିର୍ଯ୍ୟ । ଶଶିପ୍ରଭା ନବୀନ

କଣ୍ଠରେ ପ୍ରେମ-କଙ୍କଣ; ତା'ର ତୃପ୍ତିରେ ତାଙ୍କର ତୃପ୍ତି । ତାର ମନୋରଞ୍ଜନ ପାଇଁ, ଭୋଗ୍ୟବସ୍ତୁ ଯୋଗାଇବା ପାଇଁ ସେ ଘରର ବହୁ-ମୂଲ୍ୟ ଜିନିଷପତ୍ର ବନ୍ଧକ ଦେଉଛନ୍ତି—ବିକି କରୁଛନ୍ତି । ଜମିଦାରୀରୁ କିଛି ଆୟ ନାହିଁ କହିଲେ ଚଳେ । ଯାହା ଆୟ ହେଉଛି, ତାହା ଖଜଣାକୁ ନିଅଣ୍ଟ । ନିଜ ଜମିସବୁ ବିକି ମଧ୍ୟ ହେଲଣି । ତଥାପି ଏକ-ତୃତୀୟାଂଶ ମଧ୍ୟ ଶୁଝା ହୋଇନାହିଁ । ସୁରେଶବାବୁଙ୍କ ଉଗ୍ର ଅତ୍ୟାଚାରର ବ୍ୟଥା ମନେ ପକାଇ ଜଣେ ସୁଦ୍ଧା ପ୍ରଜା କେହି ତାଙ୍କୁ ଏ ବିଷୟରେ ସହାନୁଭୂତି ଦେଖାଉନାହାନ୍ତି । ଧନର ସମସ୍ତେ ସାଥି । ଯେଉଁ ବନ୍ଧୁ-ମାନେ ତାଙ୍କର ଅଗାଧ ସମ୍ପତ୍ତି ଥିଲାବେଳେ ପରମ ଅନ୍ତରଙ୍ଗ ଥିଲେ, ସେମାନେ ବର୍ତ୍ତମାନ ଟିକିଏ ସୁଦ୍ଧା ପଚାରୁ ନାହାନ୍ତି । ବିପଦ ବହୁମୁଖୀ, ଆସିଲାବେଳେ ସହଚରମାନଙ୍କ ସହ ଆସେ । ଘରେ ଯେଉଁ ଜିନିଷପତ୍ର ଥିଲା, ତାହା ଶଶିପ୍ରଭାଙ୍କ ବିଳାସ ବସ୍ତୁ କିଣାରେ ଗୋଟିକ ପରେ ଗୋଟିଏ ଯାଉଛି । ଶଶିପ୍ରଭାଙ୍କ ସହ ତାଙ୍କର ଆଳାପ ମଧ୍ୟ ଥରେ ଅଧେ ହେବା ଅସମ୍ଭବ ହୋଇ ପଡ଼ୁଛି । ଶଶିପ୍ରଭା ତାଙ୍କର ପ୍ରଧାନ ଶତ୍ରୁ ହୋଇ ପଡ଼ୁଛନ୍ତି ।ସେ ଆଖିରେ ଦେଖୁଛନ୍ତି । ନବୀନର ଚର୍ଚ୍ଚା ଲାଗି, ଭୋଜନ ଲାଗି ସୁବ୍ୟବସ୍ଥା ହେଉଛି । ମାତ୍ର ତାଙ୍କୁ ଭଲକରି ମୁଠେ ଖାଇବାକୁ ମିଳୁନାହିଁ ।

ବୀଣା ଗଲାଦିନୁଁ ପଦ୍ମ ଘରର ଆଶା ବିସର୍ଜନ କରିଛି । ଯାହାପାଇଁ ଶଶିପ୍ରଭାଙ୍କ ଶତ ଗାଳି ଅପମାନକୁ ଉପେକ୍ଷାକରି ଘରକୁ ଦୌଡ଼େ; ଯେଉଁ ତାରଟିରେ ମା'ଙ୍କର ଶେଷ ସ୍ମୃତି ରାଗିଣୀ ଲାଗି ରହିଥିଲା; ଯାର ଭଗିନୀ ସୁଲଭ କଳହରେ ତା'ର ପ୍ରାଣରେ ଅମୃତ ସଞ୍ଜୀବନୀ ଖେଳି ଯାଉଥିଲା; ସେ ଆଜି ଲୁପ୍ତ, ଛିନ୍ନ, ଧ୍ୱଂସପ୍ରାପ୍ତ । ବିଶେଷତଃ ଲୋକଙ୍କ ମୁଖରେ ଶଶୀ-ପ୍ରଭାଙ୍କ ଭୀଷଣ ଚରିତ୍ର ଦୋଷର ସମାଲୋଚନା ଶୁଣି ତା'ର ମନ ଆହୁରି ତିକ୍ତ ହୋଇଯାଇଛି । ଘରର ନାଁ ଶୁଣିଲେ, ତା'ର ଦେହ

ଜଳି ଉଠୁଛି । ଏଣିକି ତା ପାଖରୁ କଡ଼କଡ଼ୁ ଆଉ ଠଙ୍କା ବା ଗୃଉଳ ଅସୁ ନାହିଁ । ଯେଉଁ ବର୍ଷାରେ ଥିଲାବେଳେ ଘରୁ କିଏ କଦଳୀ କାନ୍ଧିଏ ଘେନ, କିଏ ଗୃଉଳଭାର ନେଇ ବା ପୁନ୍ନଅଁ ପର୍ବରେ ଭଲଜିନିଷ ନେଇ ଲୋକର ପରେ ଲୋକ ତା'ପାଖକୁ ଦୌଡ଼ୁଥିଲେ; ସେ ବର୍ଷାଖଣ୍ଡିକ ଅଶ୍ୱ କାଳମଦେବା ଉପରେ, ପୂର୍ବାର ଗୃକର ଦରମା ନପାଇ ଗୃଲିଯାଇଛନ୍ତି । ପଦ୍ମକୁ ମୁଠେ ଭାତ ମଧ୍ୟ ଖାଇବାକୁ ମିଳୁନାହିଁ । ସେ ଅଦୃଷ୍ଟକୁ ନିନ୍ଦ ନୀରବରେ ସବୁ ସହି ଯାଉଛି । ସୁରେଶବାବୁ ମଧ୍ୟ ତା'କଥାକୁ ବୁଝିବାକୁ ବା ମନେପକାଇବାକୁ ଆଗ୍ରହାନ୍ୱିତ ହେଉ ନାହାନ୍ତି । ତାଙ୍କର ବା ଗୃଗ କଅଣ ? ଶଶି-ପ୍ରଭାଙ୍କ ହାତରେ ସବୁ । ସେ ନ ବରୁଜିଲେ ଭାତମୁଠେ ତାଙ୍କ କପାଳରେ ଜୁଟିବା ମଧ୍ୟ କଷ୍ଟକର ହେବ । ସେ କେବଳ ନିଜର ଅପରିଣାମ ଦର୍ଶିତାର ଶେଷ ପରିଣତି ଭାବି ଗୋଟିଏ ଲେଖାଏ ଦୀର୍ଘନିଃଶ୍ୱାସ ପକାଉଛନ୍ତି । ପ୍ରାଣରେ ଗଭୀର କଷ୍ଟ ଅନୁଭବ କରୁଛନ୍ତି । ନିଜେ'ତ ଅର୍ଜିଛନ୍ତି, ଫଳ କିଏ ଭୋଗକରିବ ? ସେ ଏତେବେଳେ ବୁଝିପାରୁଛନ୍ତି ଯେ ସେ ଜୀବନର ଗୋଟାଏ ବଡ଼ ଭୁଲ କରିଛନ୍ତି—ଯା'ର ଆଉ ପ୍ରତିକାର ନାହିଁ ।

## —ବାର—

ଅଜି ବାଙ୍କିର ବିଗୃରାଳୟ ଲୋକାରଣ୍ୟ । ନବୀନ ନାମରେ ଗୁରୁତର ଅଭିଯୋଗ ଉପସ୍ଥାପିତ କରାଯାଇଛି । ପ୍ରଥମ ଅଭିଯୋଗ ସେ ସୁରେଶବାବୁଙ୍କ ଜମିଦାରୀର ମୋହରିର ଥାଇ ଖଜଣା ପାଇଁ ଛଅଶତ ଠଙ୍କା ଆଦାୟକରି ଅତ୍ମସାତ୍ କରିଛି । ଦ୍ୱିତୀୟ ଅଭିଯୋଗ ସେ ସୁରେଶବାବୁଙ୍କ ଗୃହକାର୍ଯ୍ୟ ବୁଝୁଥିବା ସମୟରେ ଗୋଟିଏ ହାତବନ୍ଧା ଘଡ଼ି ( **Wrist watch** ), ଗୋଟିଏ ଅଲମିରା, ଏକସେଟ୍ ବାସନ ଗୋପନରେ ଅପହରଣ କରିଅଛି । ଉଭୟପକ୍ଷରୁ ମୋକଦ୍ଦମା ଲଢ଼ିବା ପାଇଁ ଓକିଲ ମଧ୍ୟ ଦିଆ ଯାଇଛନ୍ତି । ହାକିମ ଗୋଟିକପରେ ଗୋଟିଏ

ପ୍ରମାଣ ପରୀକ୍ଷା କଲେ । ସାକ୍ଷ୍ୟନେବାପାଇଁ ତାରିଖ ପରେ ତାରିଖ ମଧ୍ୟ ଗଡ଼ିଲା, ନବୀନ କମ୍ପାନୀର ରସିଦ, କାଗଜପତ୍ର ପ୍ରମାଣ ଦେଖାଇ, ଉପଯୁକ୍ତ ସାକ୍ଷ୍ୟ ଦେଇ ମୋକଦ୍ଦମାରୁ ମୁକ୍ତହେଲା । ଫଳତଃ ଏତିକି ହେଲା ଯେ, ଶଶିପ୍ରଭାଙ୍କ ସହିତ ନବୀନର ପ୍ରଣୟ ପୂର୍ଣ୍ଣ ପ୍ରମାଣିତ ହେଲା । ନବୀନର ଯଦିଓ ଇଚ୍ଛା ନଥିଲା ଏକଥା ପ୍ରକାଶ କରିବାକୁ; ତାକୁ ଘଟନାଚକ୍ରରେ ପଡ଼ି ଶଶିପ୍ରଭାଙ୍କର ପ୍ରଣୟ-ପତ୍ର ଦର୍ଶାଇବାକୁ ପଡ଼ିଥିଲା । ମାଜିଷ୍ଟ୍ରେଟ୍ ମଧ୍ୟ ସେ ସମ୍ବନ୍ଧରେ ସୁରେଶବାବୁଙ୍କୁ ପ୍ରଶ୍ନ କଲେ । ସୁରେଶ-ବାବୁଙ୍କୁ ମୁହଁପୋତି ରହିବାକୁ ପଡ଼ିଲା । ସେତେବେଳେ ସେ ଭାବିଲେ ସ୍ତ୍ରୀବୁଦ୍ଧି ପ୍ରଳୟଙ୍କରୀ ।

ମୋକଦ୍ଦମା ନିଷ୍ପତ୍ତି ପରେ ବାହାରକୁ ଆସି ସୁରେଶବାବୁ ଦେଖନ୍ତି ଲୋକମୁଖରେ ଚାରିଆଡ଼େ ତାଙ୍କର ତିରସ୍କାର ଓ କୁତ୍ସା ରଟନା ସଙ୍ଗେ ଶଶିପ୍ରଭାଙ୍କ ଚରିତ୍ରର କୁତ୍ସିତ ସମାଲୋଚନା, ତୀବ୍ର ପ୍ରତିବାଦ ଓ ଅଶ୍ରାବ୍ୟ ଆକ୍ଷେପ । ସୁରେଶବାବୁଙ୍କୁ ଅନ୍ତରର ଦୁଃଖ ଅନ୍ତରରେ ଗୋପି ରଖିବାକୁ ହେଲା । ଯେଉଁ ନିରୀହ ପ୍ରଜା, ଗ୍ରାମ୍ୟ ଅବଳା ତାଙ୍କୁ ଦେଖିଲେ ଦଶହାତ ଦୂରକୁ ଅଡ଼େଇ ହୋଇଯାନ୍ତି, ସେମାନେ ମଧ୍ୟ ତାଙ୍କର ଆଗରେ ନିର୍ଭୟରେ ତାଙ୍କର କୁତ୍ସିତ ଆଲୋଚନା କରୁଛନ୍ତି । ଯେଉଁ ଅନ୍ତରଙ୍ଗ ବନ୍ଧୁ ସର୍ବଦା ତାଙ୍କର ଗୁଣ ଗାନ କରି ତାଙ୍କୁ ସ୍ୱର୍ଗର ଦେବତାରେ ପରିଣତ କରୁଥିଲା, ସେ ଆଜି ମୁରୁକିହସା ଦେଇ ତାଙ୍କ-ଆଡ଼କୁ ଘୃଣା କଟାକ୍ଷ ପକାଇ ଚାଲିଛି । ଭାଗ୍ୟର ଉପରେ ସବୁ ଦୋଷ ଲଦିଦେଇ ନିଜର ଛାତିକୁ ପଥର କରି ସୁରେଶବାବୁ ଘରେ ପହଞ୍ଚିଲେ । ନିଜର ଭାର୍ଯ୍ୟାଙ୍କଠାରୁ ପଦେଅଧେ ଆଶ୍ୱାସନା ବାଣୀ ଶୁଣି ନିଜର ଦୁଃଖାଗ୍ନି କିଞ୍ଚିତ ପ୍ରଶମିତ କରିବାକୁ । ମାତ୍ର ସେ ଘରେ ପାଦ ଦେଇଛନ୍ତି କି ନାହିଁ, ପଦେ କହିଛନ୍ତି କି ନାହିଁ, ଶଶିପ୍ରଭା ସେ ଅଗ୍ନି ଜଳଉଠି କହିଲେ,"ବେହିଆ, କାପୁରୁଷଗୁଡ଼ାକ, ଘର ଇଜ୍ଜତ ଦାଣ୍ଡରେ ପକାଇ

ଧାଇଁଛନ୍ତି ମୁହଁ ଦେଖାଇବାକୁ, ଇତ୍ୟାଦି । ଘରେ ଏ ଉପଦ୍ରବ, ବାହାରେ ଜନାର ପ୍ରବଳ ଘନଘଟା; ସୁରେଶବାବୁ ବ୍ୟତିବ୍ୟସ୍ତ ହୋଇପଡ଼ିଲେ । ଘରକୁ ଆଉ ଯିବେ କ'ଣ ? ସେ ଗୋଟିଏ ଦୀର୍ଘନିଃଶ୍ୱାସ ପକାଇ ସେହି ବାହାର ବାରଣ୍ଡାରେ ବସିପଡ଼ିଲେ ।

ସେହି ମୁହୂର୍ତ୍ତରେ ଜଣେ ସୁବେଶଧାରୀ ଯୁବକ ସୁରେଶବାବୁଙ୍କ ଆଡ଼କୁ ଟିକିଏ ମାତ୍ର ଭ୍ରୂକ୍ଷେପ ନ କରି ଗୃହମଧ୍ୟରେ ପ୍ରବେଶ କଲେ । ସେ ଗଲା ମାତ୍ରେ ଶଶିପ୍ରଭା ହସ ହସ ବଦନରେ ତାଙ୍କୁ ନିମନ୍ତ୍ରଣ କରି ଘର ଭିତରକୁ ନେଇଗଲେ ଏବଂ ତାଙ୍କୁ ତାମ୍ବୁଲ ଆତରରେ ସତ୍କାର କରି ତାଙ୍କସହ ବିବିଧାଲାପରେ ରତ ହେଲେ । ଉଭୟଙ୍କର ଉଚ୍ଚ ହାସ୍ୟଧ୍ୱନି ବାହାରରେ ବସି ସୁରେଶବାବୁ ଶୁଣୁଥାନ୍ତି । ଶଶିପ୍ରଭାଙ୍କର ପ୍ରକୃତରେ ମୋକଦ୍ଦମାରେ ହାରିଯିବାର ଶୁଣି ଯେତେ ମନଦୁଃଖ ଜାତ ହୋଇଥିଲା, ପ୍ରଣୟ ପ୍ରକାଶ ପାଇବା ଯୋଗୁଁ ତାଙ୍କର ସେତେ ଶୋଚନା ନଥିଲା, କାରଣ ମନୁଷ୍ୟର ଯଥେଚ୍ଛାଚାରିତା ଯୋଗୁଁ ଥରେ ଲଜ୍ଜା ସଙ୍କୋଚ ଛାଡ଼ି-ଗଲେ ସେ ସେଥିପ୍ରତି ଆଉ ଭ୍ରୂକ୍ଷେପ କରେ ନାହିଁ, ଶଶି-ପ୍ରଭାଙ୍କ ପ୍ରଣୟ ପଥରେ ସୁରେଶବାବୁ ଯଦ୍ୟପି କୌଣସି ବାଧା ଜନ୍ମାଉ ନଥିଲେ, ତେବେ ଶଶି-ପ୍ରଭାଙ୍କର ସୁରେଶବାବୁଙ୍କ ପ୍ରତି ଜାତ ହୋଇଥିଲା ଗୋଟାଏ ତୀବ୍ର ଘୃଣା, ସେଥିପାଇଁ ତାଙ୍କୁ ପଦେ ପଦେ ତିରସ୍କାର କରିବା ଅପମାନଦେବା ସେପରି ତାଙ୍କର ଦୈନନ୍ଦିନ କର୍ତ୍ତବ୍ୟର ଅନ୍ୟତମ ଥିଲା । ସୁରେଶବାବୁଙ୍କର ଏ ମୋକଦ୍ଦମା ଲଢ଼ିବାକୁ ତିଳେ ମାତ୍ର ଆଗ୍ରହ ନଥିଲା, ମାତ୍ର ଶଶିପ୍ରଭାଙ୍କ କଠୋର ପ୍ରରୋଚନାରେ ତାଙ୍କୁ ଆଦେଶ ପାଳିବାକୁ ପଡ଼ିଲା, ନଚେତ୍ ତାଙ୍କୁ ଘରେ ସ୍ଥାନ ମିଳି ନଥାନ୍ତା । ନବୀନପ୍ରତି ଶଶିପ୍ରଭା ଏତେ ବିରକ୍ତ ହେବାର ପ୍ରଧାନ କାରଣ ପ୍ରଣୟ-ଭଙ୍ଗ ।

ନବୀନ ଯେତେବେଳେ ନିଜ ପାପର ପରିଣତି କଳ୍ପନା କରି-ପାରିଲା, ଲୋକ ମୁଖରେ ତା'ର କୁତ୍ସାରଟନା, ନିମକହାରାମିର ଆଲୋଚନା

ଶୁଣି ପାରିଲା—ସୁରେଶବାବୁଙ୍କ ଘରଠାରୁ ଯିବା ସେ କ୍ରମଶଃ ବନ୍ଦକଲା । ଶଶିପ୍ରଭାଙ୍କ ଶତ ଅନୁରୋଧକୁ ସେ ଭ୍ରୂକ୍ଷେପ କଲାନାହିଁ । ବିଶେଷତଃ ତା ନିଜ ଘରର ଦାୟିତ୍ୱ ତାକୁ ସଂଯତ କରି ଦେଇଥିଲା । ତା' ସଙ୍ଗେ ତୀବ୍ର ବିବେକର ଦଂଶନ ଜ୍ୱାଳା ତାକୁ ଅନୁତପ୍ତ କରାଇଥିଲା ।

ଯେତେବେଳେ ଶଶିପ୍ରଭା ଦେଖିଲେ ସ୍ଥିର ନବୀନ ତାଙ୍କର ଆଦେଶକୁ ତୃଣ ପରି ମନେକରୁଛି, ଥରେ ଥରେ ମଧ୍ୟ ଅପମାନ ଦେଉଛି, ସେତେବେଳେ ସେ କ୍ରୋଧରେ ବିଚଳିତ ହୋଇ ଉଠିଲେ । ରମଣୀର କାମାଗ୍ନି କ୍ରୋଧାଗ୍ନିରେ ପରିଣତ ହେଲା । ଯେଉଁ ଅଧର ପ୍ରେମର ସ୍ପର୍ଶରେ କମ୍ପିତ ହେଉଥିଲା, ଯେଉଁ ନେତ୍ର କଟାକ୍ଷ ନିକ୍ଷେପ କରୁଥିଲା, ଯେଉଁ ଦେହ ପ୍ରେମର ଶିହରଣରେ ଶିହରି ଉଠୁଥିଲା, ସେହି ଅଧର କ୍ରୋଧରେ କମ୍ପିତ ହେଲା । ସେହି ହୃଦୟ ବଜ୍ରସମ ରୁକ୍ଷହେଲା । ଆଉ ସେହି ନେତ୍ରରୁ ବାହାରିଲା ଅଗ୍ନିସ୍ଫୁଲିଙ୍ଗ । ପ୍ରତିଜ୍ଞାଜଡ଼ିତ ସ୍ୱରରେ ଶଶିପ୍ରଭା କହିଲେ, ନବୀନକୁ "ଧ୍ୱଂସ କରିବାକୁ ହେବ ।" ସାମାନ୍ୟ ନବୀନ, ଯେ ତାଙ୍କର କିଙ୍କରପରି ପଦ ସେବା କରୁଥିଲା, ତା'ର ଧୃଷ୍ଟି ଏତେବଡ଼ ଅସ୍ପର୍ଦ୍ଧା । ଶଶି-ପ୍ରଭା ପ୍ରବଞ୍ଚନାର ଜାଲ କାଢ଼ି ମୋକଦ୍ଦମା ସୃଷ୍ଟି କଲେ । ଅଲଙ୍କାର ବିକ୍ରି ଖର୍ଚ୍ଚ ତୁଲାଇ ସୁରେଶବାବୁଙ୍କୁ ଠିଆ କରାଇଦେଲେ । ଯେପରି ହେଉ ନବୀନକୁ ଧ୍ୱଂସ କରିବାକୁ ହେବ । ମନୁଷ୍ୟର ମନ ଅନୁସାରେ ଫଳ ସବୁ କ୍ଷେତ୍ରରେ ଫଳେ ନାହିଁ । ସବୁ ଚେଷ୍ଟା ବୃଥା ହେଲା । ନବୀନ ମୁକ୍ତ ହେଲା । କିନ୍ତୁ ବ୍ୟଭିଚାରିଣୀ ବୋଲି ପରିଚିତା ହେଲେ । ଧନ ମାନ ସବୁ ଗଲା ।

## —ତେର—

ବର୍ଷେ ଗଲାଣି ବୃଦ୍ଧ ସୁରେଶବାବୁ ଅଜ ରୋଗଶଯ୍ୟାରେ ଶାୟିତ । ଉଠିବାର ଶକ୍ତି ନାହିଁ । ଅନବରତ କାଶ, କଫ ସଙ୍ଗେ ଥୋଳାଏ ରକ୍ତ ଦେଇ ଥରି ଥରି । ଯଷ୍ଟିଖଣ୍ଡିକ ଉପରେ ଭରିଦେଇ କେତେବେଳେ କମିତେ ପାହୁଣ୍ଡେ ଦି'ପାହୁଣ୍ଡ ଯିବା ଆସିବା କରୁଅଛନ୍ତି । କଥା କହିବାକୁ

ବେଲେ କାଶ ଉଠୁଛି । ଖାଇଲେ କିଛି ଜୀର୍ଣ୍ଣ ହେଉନାହିଁ । ଖାଇବାକୁ ମଧ୍ୟ ରୁଚି ନାହିଁ । ଧନ ନାହିଁ ଚିକିତ୍ସା କରିବାକୁ । ଭଲକରି ମୁଠେ ମଧ୍ୟ ଖାଇବାକୁ ଯୁଟିବା କଷ୍ଟକର ହେଉଛି । ବୈଦ୍ୟ ଡାକ୍ତର ବିନା ପଇସା ପାଇଲେ ଆସିବେ । ପଇସା କାହିଁ ? ଗ୍ରାମର ବୈଦ୍ୟ ଥରେ ଅଧେ ଅନୁରୋଧ ବଶତଃ ଆସି କେତୋଟି ବଟିକା ଓ ପାଚନ କେତେ ପାନ ବ୍ୟବସ୍ଥା କରିଦେଇଥିଲେ । ମାତ୍ର ସେଥିରେ କିଛି ଫଳ ହେଲା ନାହିଁ । ଗ୍ରାମର ପରିଚିତ ସ୍ନେହୀ ଲୋକ ମଧ୍ୟ ସଙ୍ଗ ଛଡ଼ା ଦେଇଛନ୍ତି । ସେ କର୍ମର ଦୋଷ ବୋଲି ଭାବି ସବୁ ସହି ଯାଉଛନ୍ତି ।

ଶଶିପ୍ରଭାଙ୍କ ବ୍ୟବହାରରେ ତାଙ୍କ ହୃଦୟ ଅତ୍ୟୁରି ଭାଙ୍ଗି ପଡ଼ିଛି । ଯାହାକୁ ପ୍ରେମର ପ୍ରଣୟିନୀ, ବାର୍ଦ୍ଧକ୍ୟର ସହାୟକାରିଣୀ କରିବାକୁ ବରିଆଣିଥିଲେ ସେ ଆଜି ତାଙ୍କର ସର୍ବନାଶର ମୂଳକାରଣ ହୋଇଛି । କେତେ ଦୁଃଶ୍ଚିନ୍ତାରେ ତାଙ୍କ ହୃଦୟଭରା । କାହାନ୍ତି ସତୀଶିରୋମଣି ଶାନ୍ତ-ସ୍ୱରୂପିଣୀ ଶାନ୍ତି, କାହିଁ ବୀଣା, ଆଉ ଉପେକ୍ଷିତ ସ୍ନେହର ପୁତ୍ର ପଦ୍ମ ? ହାୟ ଅଦୃଷ୍ଟଲେଖନ ! କାହିଁ ମୋର ବରିଷ୍ଠ ପ୍ରଭୁତ୍ୱ, ବିଶାଳ ଜମିଦାରୀ ? କାଳସର୍ପୀର ପାଦପାତ ବନ୍ଦି ସବୁ ଚୂର୍ଣ୍ଣ । ସ୍ୱହସ୍ତେ ରୋପିତ ବୀଜ ବିଷ-ଦ୍ରୁମରେ ପରିଣତ । ଭାବନା ନ ସରୁଣୁ ସଙ୍ଗେ ସଙ୍ଗେ କାଶ, କଣ୍ଠରୋଧ ଝଲକାଏ ରକ୍ତ ସହ କଫ ଉଦ୍ଗୀର୍ଣ୍ଣ ହେଉଛି, ଆଉ ଦୁଇଗଣ୍ଡ ଦେଇ ଝରି ପଡ଼ୁଛି ଦୁଇଟି ଅଶ୍ରୁଧାରା ।

ଦିନେ ନୁହେଁ, ଦୁଇଦିନ ନୁହେଁ, ଆଜକୁ ଛଅମାସ ହେଲା ରୋଗ ତାଙ୍କର ଅଚଳ ଅବସ୍ଥା ସୃଷ୍ଟି କରିଛି । କିନ୍ତୁ ଏବେ ଦୁଇ ଦୁଇଦିନ ହେଲା ରୋଗ ଭୀଷଣ ହୋଇଛି । ପାଖରେ କେହି ଟିକିଏ ଅଶ୍ୱାସନା ଦେବାକୁ ନାହିଁ । ରୋଗର ଯନ୍ତ୍ରଣାରେ ଆର୍ତ୍ତନାଦ ତାଙ୍କର ଶୁଷ୍କ କଣ୍ଠଦେଇ ବାହାରି ପଡ଼ୁଛି । ଦାସଦାସୀ ପୂଜାରୀ ସମସ୍ତେ ଚାଲିଗଲେଣି । ଶଶିପ୍ରଭା ଇଚ୍ଛାହେଲେ ହାତରେ ଦୁଇଟା ଫୁଟାଇ ଦେଉଛନ୍ତି—ନହେଲେ ନାହିଁ । କେବଳ

ଟୋଟିଏ ଦାସୀ ଏ ବିପଦରେ ତାଙ୍କୁ ଛାଡ଼ିଯାଇ ନାହିଁ । ସେ ହେଉଛି ଗୌରୀ । ଯେଉଁ ଦିନ କଥା କୁହାଯାଉଅଛି, ସେଦିନ ଗୌରୀ ମଧ୍ୟ ନାହିଁ । ସେ ଶଶିପ୍ରଭାଙ୍କ ବିପଦରେ କୁଆଡ଼େ ଯାଇଛି । ଏହିପରି ସୁରେଶବାବୁଙ୍କର ମୃତ୍ୟୁ ଓ ଦୁଃଖ ଶୋକଭରା ଜୀବନ ମଧ୍ୟରେ ସଂଗ୍ରାମ ଚାଲିଥିବା ବେଳେ ସୁରେଶବାବୁ ଶୋଇଥିବା ଘରର ଠିକ ନିକଟବର୍ତ୍ତୀ କକ୍ଷରୁ ହାରମୋନିଅମ ସ୍ୱର ସଙ୍ଗେ ଭାସି ଆସିଲା ସଙ୍ଗୀତର ମଧୁର ରାଗିଣୀ ।

'ସୁନ୍ଦର ହେ ! ତୁମ ଲାଗି ଅଛି କେତେ ଦିନ ଚାହିଁ,
ତୁମରି ପ୍ରେମ-ସୁଅରେ ପରାଣ ମନ ଭସାଇ ।
ପ୍ରେମେ ଏ ଜଗତ ଅନ୍ଧ,
ନ ମାନଇ ବାଧା ବନ୍ଧ;
(ଦେଖ) ଧାଏଁ ଅଳି ପୁଷ୍ପ-ବଧୂ-ବଦନ ଚୁମ୍ବିବାପାଇଁ ।'

ଏହି ସମୟରେ ସୁରେଶବାବୁ ପାଣି ପାଣି ବୋଲି ଚିତ୍କାର କରି ଉଠିଲେ । ଶଶିପ୍ରଭା ସେହି ନିକଟବର୍ତ୍ତୀ କକ୍ଷଟିରେ ବସି ସେହି ଗାନଟି ଶୁଣିବାରେ ନିମଗ୍ନା ଥିଲେ । ଥରେ ଥରେ ମଧ୍ୟ ତାଙ୍କ କଣ୍ଠରୁ ଅସ୍ଫୁଟ ଆନନ୍ଦ ଧ୍ୱନି ବାହାରି ପଡୁଥିଲା । ମାତ୍ର ସୁରେଶବାବୁଙ୍କ ଡାକ କାନରେ ବାଜିବାରୁ 'ଏ ମଣିଷକୁ ବସାଇ ଉଠାଇ ଦେବେ ନାହିଁ' ବୋଲି କହି ନିତାନ୍ତ ଅନିଚ୍ଛା ସତ୍ତ୍ୱେ ଯାଇ ସୁରେଶବାବୁଙ୍କ ପାଖରେ ପାଣି ଝରିଟାଏ ଥୋଇଦେଲେ । ସୁରେଶବାବୁ ଶଶିପ୍ରଭାଙ୍କ ତାଚ୍ଛଲ୍ୟ ଭାବ ଦେଖି କିଛି କହିଲେ ନାହିଁ । କେବଳ ପଚାରିଲେ, 'କପରି ପିଇବି?' ସେ ଅବସ୍ଥାରେ ମଧ୍ୟ ସୁରେଶବାବୁଙ୍କ ପ୍ରତି ଶଶିପ୍ରଭାଙ୍କର ପଦେ ଆଶ୍ୱାସନା ବାକ୍ୟ ବାହାରିଲା ନାହିଁ । ଓଲଟି ରୁକ୍ଷସ୍ୱରରେ କହିଲେ, 'କାହିଁକି, ଉଠି ବସି ପିଉ ନାହଁ—ମଣିଷକୁ ଘାଣ୍ଟି ଖାଇ ସାରିଲଣି ।' ଏ ବ୍ୟବହାରରେ ସୁରେଶବାବୁ ଅତି କଷ୍ଟରେ ବସି ପାଣି ପିଇବାକୁ ଚେଷ୍ଟା କଲେ । ଟୋକେ ପିଇଛନ୍ତି କି ନାହିଁ ପ୍ରବଳ କାଶ ଆସିଲା । ରକ୍ତସହ ଗୁଡ଼ାଏ

କଫ ସଙ୍ଗେ ସଙ୍ଗେ ବାହାରି ପଡ଼ିଲା । ସୁରେଶବାବୁ ଅବଶ ହୋଇ ଶେଯ ଉପରେ ପଡ଼ିଗଲେ । ଶଶିପ୍ରଭା ଭ୍ରୂକ୍ଷେପ ନ କରି ପୁଣି ଆର କକ୍ଷକୁ ଚାଲିଗଲେ । ସୁରେଶବାବୁଙ୍କୁ ଏସବୁ କଣ୍ଠାଘାତରେ ଚୂନ ଦେଲା ପରି ଲାଗୁଥାଏ, ମାତ୍ର ଚାରା କ'ଣ?

ଯେଉଁ ନୂତନ ଯୁବକଟି ଶଶିପ୍ରଭାଙ୍କ ସଙ୍ଗରେ ଯୋଗ ଦେଇଛି ଓ ଗୀତ ଗାଉଛି, ଏ ଜଣେ ବିଦେଶୀ—ନାମ ବିଜୟଚନ୍ଦ୍ର । ବନ୍ଧୁଘରକୁ ଆସି ଶଶିପ୍ରଭାଙ୍କ ସଙ୍ଗେ ପରିଚିତ ହୋଇ ତାଙ୍କର ପ୍ରଣୟସଙ୍ଗୀ ହୋଇଥିଲା । ଏହାର ସହଯୋଗରେ ଶଶିପ୍ରଭା ନିଜ ପ୍ରତିହିଂସା ନେଣ୍ଟନର ସୁଯୋଗ ଖୋଜୁଥିଲେ । ନବୀନ ନାମରେ ମୋକଦ୍ଦମା କରାଗଲା । ଫଳତଃ ସୁରେଶବାବୁଙ୍କର ଲାଞ୍ଛନାର ସୀମା ରହିଲା ନାହିଁ । ଶଶିପ୍ରଭାଙ୍କର ଆଶ୍ରୟ ପାଇବାଦନୁଁ ବିଜୟର କିଛି ଅଭାବ ନାହିଁ । ସେ ନିଜ ଘର ପରି ମନେକରି ସୁରେଶବାବୁଙ୍କ ଘରେ ଚଳୁଛି । ଶଶିପ୍ରଭା ମଧ୍ୟ ତାକୁ ସୁଖରେ ରଖିବା, ତାର ସନ୍ତୋଷ ଆଣିବାପାଇଁ ନିଜର ସର୍ବସ୍ୱ ସମର୍ପଣ କରିଛନ୍ତି । ଜମିଦାରୀ ଖଣ୍ଡକୁ ଖଣ୍ଡ ନିଲାମ ହେଉଛି, ଘରର ଜିନିଷ ପାତ୍ର କ୍ରମଶଃ ସରୁଛି । ସ୍ତ୍ରୀର ସ୍ୱାମୀ ମୃତ୍ୟୁଯନ୍ତ୍ରଣାରେ ବ୍ୟଥିତ । କୌଣସି ପ୍ରତି ତାଙ୍କ ଭ୍ରୂକ୍ଷେପ ନାହିଁ । ସେ ସ୍ଥିରଭାବରେ ଜାଣିଛନ୍ତି, ବିଜୟଛଡ଼ା ତାଙ୍କର ଗତି ନାହିଁ ।

ଠିକ୍ ଦୁଇଦିନପରେ ସୁରେଶବାବୁଙ୍କର ରୋଗଯନ୍ତ୍ରଣା ବୃଦ୍ଧି ପାଇଛି । କାଶର ବେଗ ବଢ଼ିଛି । କେତେଦିନ ହେଲା ସାମାନ୍ୟ ଜ୍ୱର ହେଉଥିଲା । ସେଦିନ ଜ୍ୱର ପ୍ରବଳଭାବରେ ଆକ୍ରମଣ କରିଛି । ସବୁଠାରୁ ବେଶୀ ପରିମାଣରେ ରକ୍ତ କଫ ସଙ୍ଗେ ଯାଉଛି । ଜ୍ଞାନ ନାହିଁ । ଯେତେବେଳେ ସାମାନ୍ୟ ଚେତନା ଆସୁଛି, ଟିକିଏ ସେତେବେଳେ ଆଖି ଖୋଲି ଚାହୁଁଛନ୍ତି । "ଶଳାକୁ ମାର, ଧର," ଏହିପରି ପ୍ରଳାପ ଗୁଡ଼ିଏ ମୁହଁରୁ ବାହାରୁଛି । ଯେପରି ତାଙ୍କର ଜୀବନ ଚିତ୍ର ସେହିକଥା ଦପଦପ ଭିତରେ ଅଜ୍ଞାତଭାବରେ

ପ୍ରକାଶିତ ହୋଇ ପଡୁଛି, ତାଙ୍କର ସେହି ଅତୀତ କାର୍ଯ୍ୟାବଳୀ-ଦ୍ୟୋତକ ଇତିହାସର ପୃଷ୍ଠା ଉଦ୍‌ଘାଟିତ ହେଉଛି । ପାଖରେ ବଜାୟ,' କାଛି ଅନ୍ତରରେ ଶଶିପ୍ରଭା ଓ ଗ୍ରାମର ଅନ୍ୟ କେତେଜଣ ପରିଚିତ ଲୋକ ଉପବିଷ୍ଟ । ବୈଦ୍ୟ ନାଡ଼ୀ ପରୀକ୍ଷା କରି ମୁଖ ବିକୃତ କରୁଛନ୍ତି । ସୁରେଶବାବୁଙ୍କ କଣ୍ଠରୁ ଘଡ଼ଘଡ଼ ଶବ୍ଦ ବାହାରୁଥାଏ । ସମସ୍ତେ ଜଳଜଳ ଚାହିଁଛନ୍ତି । ହଠାତ୍ ସୁରେଶବାବୁଙ୍କର ପ୍ରବଳ କାଶ ଉଠିଲା । ନାକ, ମୁହଁ ଦେଇ କଫସହିତ ଗୁଡ଼ାଏ ରକ୍ତ ବାହାରି ପଡ଼ିଲା । ଠିକ୍ କଫ ଧ୍ୱନି ଶେଷ ହେବା ବେଳକୁ ସମସ୍ତେ ଦେଖିଲେ, ଦେହରେ ଆଉ ଜୀବନ ନାହିଁ । ପ୍ରତାପୀ ଜମିଦାର ସୁରେଶଚନ୍ଦ୍ର ଆଜି ପରିଣତ ମୃତ୍ତିକା-ପିଣ୍ଡୁଳାରେ । ଚକ୍ଷୁ ଦିଓଟି ତାଙ୍କର ଚିରକାଳ ପାଇଁ ମୁଦ୍ରିତ । ଶଶିପ୍ରଭାଙ୍କ କଣ୍ଠରୁ ପତିଭକ୍ତିଦ୍ୟୋତକ କ୍ରନ୍ଦନର ଧ୍ୱନି ଉଚ୍ଛୁଳି ପଡ଼ିଲା । ପାଖରେ ଥିବା ଲୋକମାନେ ବ୍ୟସ୍ତ ହୋଇ ଦୁଃଖିତ ହେବାକୁ ଲାଗିଲେ । ମାତ୍ର ପ୍ରକୃତରେ ସୁରେଶବାବୁ ଚିରଦିନପାଇଁ ଭୌତିକ ଯନ୍ତ୍ରଣାରୁ ମୁକ୍ତ ହେଲେ ।

—ଚଉଦ—

ସୁରେଶବାବୁଙ୍କ ଶୁଦ୍ଧିକ୍ରିୟା ସରିଛି । ସବୁ ସମ୍ପତ୍ତି ମଧ୍ୟ ଯାଇଛି । ପୂର୍ବରୁ'ତ ଜମିଦାରୀ କେତେ ଖଣ୍ଡ ନିଲାମ ହୋଇଥିଲା, ମହାଜନର କରଜ ନେଇ ଘର ମଧ୍ୟ ଦୁଇ ତିନି ଥର ବନ୍ଧକ ହୋଇ ଯାଇଛି । ତେବେବି ଅନେକ ବାକି । ସୁରେଶବାବୁଙ୍କ ଶୁଦ୍ଧିକ୍ରିୟା ଅତି ଆଡ଼ମ୍ବର ସହକାରେ ସମ୍ପନ୍ନ କରାଯାଇଥିଲା । କାରଣ ଜମିଦାରଙ୍କ ଶୁଦ୍ଧିକ୍ରିୟା । କର୍ପୂର ବିନା ଯାଉଛି, କନା'ତ ପଡ଼ୁଛି, ଖର୍ଚ୍ଚର ଆଉ ସୀମା ରହିଲା ନାହିଁ । ମହାଜନଠାରୁ କରଜହୋଇ ଖର୍ଚ୍ଚ ଚାଲିଲା । ଜମିଦାରୀଲୋଭରେ ମହାଜନ ଟଙ୍କା ଦେବାକୁ ଅସ୍ୱୀକାର କଲା ନାହିଁ । ଶୁଦ୍ଧିଘର ସରିଲାବେଳକୁ ଶଶିପ୍ରଭାଙ୍କର ଆଉ କିଛି ନଥିଲା । ମହାଜନମାନେ ମଧ୍ୟ କେତେଦିନ ଅପେକ୍ଷା କରି ମୋକଦ୍ଦମା ଦ୍ୱାରା ସର୍ବସ୍ୱ ନେଲେ । ତେବେବି କରଜ ସମ୍ପୂର୍ଣ୍ଣଭାବେ ନଷ୍ଟ ପାଇ-

ପାରୁ ନାହିଁ । ତଥାପି ଶଶିପ୍ରଭା ଖୁବ୍ ସାବଧାନରେ ଏସବୁ ବିପଦ ଅତିକ୍ରମ କରିବାକୁ ଚେଷ୍ଟା କରୁଥିଲେ—ମାତ୍ର ପାରିଲେ ନାହିଁ । ଅସ୍ତେ ଅସ୍ତେ ଜମିଦାରୀ ଯାଉଥିଲା । ଏ ଦୁର୍ଦ୍ଦଶାରେ ମଧ୍ୟ ସେ ବିଜୟଚନ୍ଦ୍ରଙ୍କୁ ଛାଡ଼ିପାରି ନ ଥିଲେ । ସୁରେଶବାବୁଙ୍କ ବିଯୋଗ ପରେ ଯଦି ବା ପ୍ରଥା ମତେ ସେ ବିଧବା ବେଶ ସାଜିଥିଲେ, ଗତାନୁଗତିକ ଭାବେ କନ୍ଦନର ଚେଉ ଖେଳାଇ ଯଥେଷ୍ଟ ପତିଭକ୍ତିର ଛଳନା ଦେଖାଇଥିଲେ, ମାତ୍ର ତାଙ୍କ ଅନ୍ତରରୁ ବିବେକ ଯେପରି ଲୋପ ପାଇଥିଲା । ଏଣିକି ମଧ୍ୟ ସାମାନ୍ୟ ସ୍ୱାର୍ଥ ସିଦ୍ଧି ପାଇଁ ସେ ବେଶ୍ୟା ସଦୃଶ କାହାରିକୁ ନିଜର ରୂପ ଯୌବନ ଟେକିଦେବାକୁ କୁଣ୍ଠିତ ହେଉ ନଥିଲେ । ଅନ୍ତରର ଦୁର୍ବାର ପ୍ରବୃତ୍ତି ଗୁଡ଼ାକ ଯେପରି ଟକୋଚ, ଆବରଣ, ଫିଙ୍ଗି ବିଶ୍ୱ ଗ୍ରାସ କରିବାକୁ ପ୍ରବୃତ୍ତ ହେଉଥିଲେ । ଲୋକନିନ୍ଦା ଓ ଭୟ ତ୍ୟାଗକଲେ, ପରିଣତି ଏହିପରି ହେବାର ଦେଖାଯାଏ । ଲୋକକୁ ନିଜର ରୂପଯୌବନ ବିକ୍ରିବାଟା ହାଟର ବାଇଗଣ ପରିବା ବିକିବା ଭଳି ପ୍ରତୀୟମାନ ହୁଏ । ସେଥିପାଇଁ ବିଖ୍ୟାତ ଜମିଦାରର ଗୃହିଣୀ ହୋଇ ଶଶିପ୍ରଭା ଆଜି ନିଜର ଯୌବନ ଅକାତରରେ ବିକିବାରେ ଲାଗିଛନ୍ତି । କି ଆଶ୍ଚର୍ଯ୍ୟ ଜଗତର ଗତି ! ଅନ୍ନ ସମସ୍ୟା ମଧ୍ୟ ତାଙ୍କର ଗୁରୁତର ହୋଇଛି । ସେଥିପାଇଁ ଏହି ବ୍ୟବସାୟକୁ ସେ ଜୀବିକାର୍ଜନର ଅନ୍ୟତମ ପନ୍ଥା ବୋଲି ଧରିଲେଣି । ଅତୁଳ ଧନର ଅଧିକାରିଣୀ ଶଶି-ପ୍ରଭା ଆଜି ପୁଣି ପେଟ ପାଇଁ ରୂପଜୀବୀ । ଦୁର୍ବଳତା ସଙ୍ଗେ ଉଚ୍ଛୃଙ୍ଖଳତା ମିଶି ସ୍ୱାଭାବିକ ନୈତିକ ଜ୍ଞାନ ଲୋପ କରେ । ଜଗତରେ ଅତି ହୀନ କୁଳରୁ ମଧ୍ୟ ଜାତ ଶତଶତ ଗୋଲି, ମାଲତୀ, ଚେମି ପେଟପାଇଁ କୁଠା କୁଟନ୍ତି—ମୁଣ୍ଡରେ ପଥରବୋଝ ବୁହନ୍ତି, ନଚେତ୍ ନୀରବ ଅଶ୍ରୁଧାର ବୁହାଇ ନଦୀଗର୍ଭରେ ଅଶ୍ରୟ ନିଅନ୍ତି ସିନା, ମାତ୍ର ନିଜର ସତୀତ୍ୱ-ଗୌରବ ହରାନ୍ତି ନାହିଁ । ମାତ୍ର· କୁଳୀନତା ଆବରଣର ଅନ୍ତରାଳରେ ଅସୂର୍ଯ୍ୟମ୍ପଶ୍ୟା ରୂପେ ରହି ମଧ୍ୟ ନୈତିକତାର ଅଭାବ ଯୋଗୁଁ

କେତେ ନାରୀ ନିଜର ସତୀତ୍ୱକୁ ଅଟଳ, ନିର୍ବଳ ରଖିପାରନ୍ତି ନାହିଁ । ଜଗତର ସାମାନ୍ୟ ପ୍ରଲୋଭନ-ଧକ୍କା ସେମାନଙ୍କୁ ପଥଭ୍ରଷ୍ଟ କରିଦିଏ । ଯେଉଁଠାରେ ଦାମ୍ପତ୍ୟ-ଜୀବନ ବିଶୁଦ୍ଧପ୍ରେମମୂଳକ ନ ହୋଇ କାମ-ମୂଳକ ହୋଇଥାଏ, ସେଠାରେ ଏହି ସ୍ୱେଚ୍ଛାଚାରିତା ଦେଖାଯିବାର ଅଧିକ ସମ୍ଭାବନା ଥାଏ ।

ଶଶିପ୍ରଭାଙ୍କର ଯୌବନର ଛଟା ଅଳ୍ପେ ଅଳ୍ପେ ଲିଭି ଯାଉଛି । ଧନ ମଧ୍ୟ ସରିଛି । ଏକ ଆଡ଼େ ପେଟଜ୍ୱାଳା, ଅନ୍ୟ ଆଡ଼େ କାମଲାଲସା-ମେଣ୍ଟନ । ଏ ଉଭୟବିଧ ସ୍ୱାର୍ଥମେଣ୍ଟନପାଇଁ ସେ ଏ ବୃତ୍ତି ଅବଲମ୍ବନ କରିଛନ୍ତି । ଏଥି ମଧ୍ୟରେ ବିଜୟଚନ୍ଦ୍ର ବିଦାୟ ନେଲେଣି । ତା'ର ଯେପର୍ଯ୍ୟନ୍ତ ଶଶିପ୍ରଭାଙ୍କ ଦ୍ୱାରା ଖର୍ଚ୍ଚପାଣି ଚଳୁଥିଲା, ସେପର୍ଯ୍ୟନ୍ତ ସେ ଥିଲା । ମାତ୍ର ସେ ଯେତେବେଳେ ଦେଖିଲା । ଶଶିପ୍ରଭା ବର୍ତ୍ତମାନ ପଥର ଭିକାରୁଣୀ, ଅଉମଧ୍ୟ ତାଙ୍କ ସୌନ୍ଦର୍ଯ୍ୟରେ ସେ ଆକର୍ଷଣୀ ଶକ୍ତି ନାହିଁ, ସେତେବେଳେ ସେ କୌଣସି ଛଳନା ଦେଖାଇ ଗାଁଆକୁ ଚାଲିଗଲା ।

ଶଶିପ୍ରଭା ବର୍ତ୍ତମାନ ନିରାଶ୍ରୟା—ଯେ ଏତେ ଦାସ ଦାସୀ ଧରି ଅଗାଧ ସମ୍ପତ୍ତିର ଅଧିକାରିଣୀ ହୋଇ ନିଜର ପ୍ରଭୁତ୍ୱଗର୍ବରେ ଧରାକୁ ସରା ମନେ କରୁଥିଲା, ତାର ଆଜି ଏ ଶୋଚନୀୟ ପରିଣାମ ! ଶଶିପ୍ରଭା-ଙ୍କର ତେବେବି ସମ୍ପୂର୍ଣ୍ଣରୂପେ ଚେତନା ଆସି ନଥିଲା । ଏ ବୃତ୍ତିର ଆଶ୍ରୟ ନେଇ ସେ ଯେ ଭଲଭାବରେ ଚଳୁଥିଲେ ତା ମଧ୍ୟ ନୁହେଁ । କେବଳ ଯେକୌଣସି ପ୍ରକାରେ ଏହାଦ୍ୱାରା ଉଦରାନ୍ନର ସଂସ୍ଥାନ କରିବାକୁ ପଡ଼ୁଥିଲା । ଘରେ କେବଳ ଆଶ୍ରୟ ବୋଲି ଥିଲା ନିଜର ବହୁଦିନର ଚାକରାଣୀ ଗୌରୀ । ସେ ମଧ୍ୟ ଆଜିଯାଏ ପ୍ରଭୁପତ୍ନୀଙ୍କର ଅଭାବ ଅସୁବିଧାରେ ନିଜକୁ ସମଭାଗିନୀ କରି ଚଳି ଆସୁଥିଲା । ମାତ୍ର ସେ ଶଶିପ୍ରଭାଙ୍କୁ ଏ ହୀନ ବୃତ୍ତି ଆଶ୍ରୟ କରିବାର ଦେଖି ବିଦାୟ ନେଲା ।

ଏ ଦୁର୍ଦ୍ଦଶାରେ ଶଶିପ୍ରଭା ଅନ୍ୟ ଉପାୟ ନଦେଖି ଏହି ଏକମାତ୍ର ବୃତ୍ତି ଅବଲମ୍ବନ କରି ଘରେ ପଡ଼ିରହିଲେ ।

## —ପନ୍ଦର—

ପଦ୍ମ ବର୍ତ୍ତମାନ କଟକରେ । ଘରଦ୍ୱାର ଜମିଦାରୀ ପ୍ରତି ତା'ର ଟିକିଏ ସୁଦ୍ଧା ସ୍ପୃହା ନାହିଁ । ବିଶେଷତଃ ଶଶିପ୍ରଭାଙ୍କ ଚରିତ୍ରହୀନତା, ପ୍ରକାଶ୍ୟ ବେଶ୍ୟା ବୃତ୍ତି ଅବଲମ୍ବନ ପ୍ରଭୃତି ଘଟନା ଗୁଡ଼ିକ ତା'ର ଘରର ମାୟାମମତା ତୁଟାଇ ଦେଇଛି । ସେ ଗାଁକୁ ଆସିଥିଲା ପିତାଙ୍କ ମୃତ୍ୟୁର ଦିନେ ଦୁଇଦିନ ପୂର୍ବରୁ । ମାତ୍ର ସେ ଯେତେବେଳେ ଆସିଲା ସେତେବେଳେ ପିତାଙ୍କ ଜୀବନଦୀପ ନିର୍ବାଣ ପ୍ରାୟ, ସେ ଜ୍ଞାନଶୂନ୍ୟ । ପିତାଙ୍କର ଏପରି ଅବସ୍ଥାରେ ମଧ୍ୟ ଶଶିପ୍ରଭାଙ୍କ ଯଥେଚ୍ଛାଚାରିତା, ପିତାଙ୍କ ପ୍ରତି ଅନାସ୍ଥାଭାବ ପ୍ରଦର୍ଶନ ପଦ୍ମର ମନକୁ ଆହୁରି ତିକ୍ତ କରି ଦେଇଥିଲା । ସେଥିପାଇଁ ପିତାଙ୍କର ଅନ୍ତ୍ୟେଷ୍ଟିକ୍ରିୟା ସାରି ସେ ସଙ୍ଗେ ସଙ୍ଗେ ଚାଲିଆସିଲା କଟକ । ସେତେବେଳେ ପଦ୍ମର ଦୁର୍ଦ୍ଦଶାର ସୀମା ନଥିଲା । ତା'ର ମାଟ୍ରିକ୍ ପରୀକ୍ଷାଦେବା ସମାଗତ ପ୍ରାୟ । ଘରୁ ଟଙ୍କା ପାହୁଲାଟାଏ ପାଇବାର ପନ୍ଥା ନାହିଁ । କଟକରେ ସେ ଯେଉଁ ବସା-ଖଣ୍ଡିକରେ ରହେ, ସେ ଖଣ୍ଡିକ ମଧ୍ୟ ନିଲାମ ହୋଇ ଯାଇଛି । ତଦୁପରି ଅନ୍ନଚିନ୍ତା । ଏହି ବାସହୀନ, ଅନ୍ନ ବସ୍ତ୍ରହୀନ ଅବସ୍ଥାରେ ରହି ମଧ୍ୟ ସେ ମାଟ୍ରିକ ପରୀକ୍ଷା ଦେବାକୁ ଜୀବନର ଶେଷ ଶିକ୍ଷା-ବ୍ରତ ଉଦ୍ଯାପନ କରିବାକୁ ମେରୁ ପରି ଅଟଳ । ସେଥିପାଇଁ ସେ ଖଣ୍ଡିଏ ଟିଉସନର ଆଶ୍ରୟ ନେଇ ଅନ୍ନବସ୍ତ୍ର ସମସ୍ୟା ସମାଧାନ କରୁଛି । ପରୀକ୍ଷାର ଫିସ୍ ପ୍ରଭୃତି ତାକୁ ଅତି କଷ୍ଟରେ ସଂଗ୍ରହ କରିବାକୁ ହୋଇଛି । ତାକୁ ଦ୍ୱାରେ ଦ୍ୱାରେ ଭିଖ ମାଗିବାକୁ ପଡ଼ିଛି । ତା'ର ପିତାଙ୍କୁ ଯେଉଁମାନେ ଜାଣନ୍ତି, ତା'ର ବଂଶର ମର୍ଯ୍ୟାଦା ଯେଉଁମାନେ ଦେଖିଛନ୍ତି ସେମାନେ ଭଦ୍ରତାର ଖାତିରରେ ଦୟାପରବଶ ହୋଇ ସହାନୁଭୂତି ଦେଖାଇଛନ୍ତି । ତାକୁ

ରହିବା ପାଇଁ ଅଶ୍ରୟ ଦେଇଛନ୍ତି । ହାୟ ବିଧାତାର ନିଷ୍ଠୁର ଉପହାସ ! ଯେଉଁ ପଦ୍ମ ଲାଗି ଟିଉସନ ମାଷ୍ଟର ଖଞ୍ଜା ହୋଇଥିଲେ, ଯା'ର ଦୟାରୁ ପାଞ୍ଚଜଣ ଛାତ୍ର ମଧ୍ୟ ସାହାଯ୍ୟପାଇ ପଢ଼ି ପାରୁଥିଲେ, ସେହି ପଦ୍ମ ଆଜି ପଥର ଭିକାରି, ପରଦ୍ୱାରରେ କୃପାପ୍ରାର୍ଥୀ ।

ଯାହାହେଉ ସେ ଯେ କୌଣସି ପ୍ରକାରେ ପରୀକ୍ଷା ଦେଲା । ଅନାଥର ଭଗବାନ ସହାୟ । ଦୀର୍ଘ ଦୁଇମାସ ଛଅମାସ ପରୀକ୍ଷା-ଫଳ ଶୁଣିବା ପାଇଁ ପ୍ରତୀକ୍ଷା କରି କରି ଶେଷରେ ସେ କୃତକାର୍ଯ୍ୟ ହେବାର ମଧ୍ୟ ଶୁଣିଲା । ଲୋକ କୌଣସି କାର୍ଯ୍ୟରେ ଲାଗିଥିବାଯାଏ, ସେ ଭବିଷ୍ୟତ୍ ଫଳ ଲାଭ ପାଇଁ ଆଶାୟୀ ଥାଏ । ଅନ୍ୟ ଚିନ୍ତା ତା'ର ମନରେ ସ୍ଥାନ ପାଏ ନାହିଁ । କିନ୍ତୁ କାର୍ଯ୍ୟ ଶେଷରେ ବା ଫଳଲାଭ ପରେ ଅନ୍ୟ କାର୍ଯ୍ୟ-ପନ୍ଥା ସ୍ଥିରୀକୃତ ହେବା ପର୍ଯ୍ୟନ୍ତ ମନୁଷ୍ୟ ପକ୍ଷରେ ସମୟ-ଯାପନ ଦୁଃସହ ହୋଇ ଉଠେ । ପଦ୍ମ ପାସ୍ ଫଳ ଶୁଣିଲା ପରେ କ'ଣ କରିବ ଠିକ୍ କରି ପାରୁନାହିଁ । ସେ ପାସ୍ ଫଳ ଶୁଣି ଯେଉଁ ଆନନ୍ଦ ଲାଭ କରିଥିଲା, ତାହା କେତେକ୍ଷଣ ପାଇଁ ! ନାନା ବାଧାବିଘ୍ନ ଦେଇ ତା'ର ବଦନର ବ୍ରତ ଉଦ୍ଯାପନ କରି ପାରିଲା ବୋଲି ସେ ଗୋଟିଏ ଆଶ୍ୱସ୍ତିର ନିଃଶ୍ୱାସ ଛାଡ଼ିଲା । କିନ୍ତୁ ଭବିଷ୍ୟତ୍ ତାକୁ ଅନ୍ଧକାରମୟ ଦେଖାଗଲା । ସେ ଏଣ୍ଟ୍ରାନ୍ସ ପରୀକ୍ଷା ଦେବାକୁ ଜୀବନର ଶିକ୍ଷା ସୋପାନର ଶେଷ ପରିଚ୍ଛେଦ ବୋଲି ଲକ୍ଷ୍ୟ ରଖି ଭବିଷ୍ୟତ୍ ପ୍ରତି ଦୃଷ୍ଟି ଦେଇ ନ ଥିଲା । ବର୍ତ୍ତମାନ ପରିସ୍ଥିତିକୁ ବିଚାର କରି ସେ ସ୍ୱୀୟ କର୍ତ୍ତବ୍ୟ ଅବଧାରଣାରେ ବଡ଼ ସନ୍ଦିଗ୍ଧ ହୋଇ-ପଡ଼ିଲା । ସେ ଏ ଅବସ୍ଥାରେ ଉପାୟଶୂନ୍ୟ ଭାବେ ବସି ରହିବାକୁ ଉଚିତ ମନେ କଲା ନାହିଁ । ଅବଶ୍ୟ ଯୋଗାଡ଼ କରି ଥିଲେ ଅତି କଷ୍ଟରେ ପଢ଼ି ପାରିଥାନ୍ତା; ମାତ୍ର ପରଦ୍ୱାରରେ ଟିଉସନ୍ କରି ଏ ଭଗ୍ନ ହୃଦୟ ନେଇ ସେ ଆଉ ପଢ଼ିବାକୁ ଇଚ୍ଛା କଲାନାହିଁ ବା ଗୃହକର୍ତ୍ତ୍ରୀ ଦଗରେ ତା'ର ମଧ୍ୟ ପ୍ରବୃତ୍ତି ଗଲା ନାହିଁ । ପିଲାଦିନୁଁ ସେ ଟିକିଏ ସ୍ୱାଧୀନଚେତା ଥିଲା । ସେ

ସେହି ସ୍ୱାଧୀନତା ସୂତ୍ର ଧରି ସ୍ୱାଧୀନ ଉପାୟ ଉପରେ ନିଜର ଜୀବନ ଅଟ୍ଟାଳୀ ଗଢ଼ିବାକୁ ସ୍ଥିର କଲା । ସାହସ ପୂର୍ବକ କିଛି ସଞ୍ଚିତ ଅର୍ଥ ନେଇ ସେ ଆରମ୍ଭ କରିଦେଲା ଗୋଟିଏ ପାନ ଦୋକାନ । ଠିକ୍ କଲେଜ ନିକଟରେ, ଜଣେ ଶିକ୍ଷିତ ଲୋକ ପାନର ଦୋକାନ ଦେଇଛନ୍ତି ଦେଖି ଶିକ୍ଷିତ ଅଶିକ୍ଷିତ ଛାତ୍ର, ଶିକ୍ଷକ ସମସ୍ତେ ତା ଠାରୁ ଅନ୍ୟ ଦୋକାନ ଛାଡ଼ି ପାନ କିଣିବାରେ ଲାଗିଲେ । ପଦ୍ମ ଦୀଘ ବେଶ ଦୁଇପଇସା ରୋଜଗାର କରି ନିଜର ଜୀବିକା ତା ଦ୍ୱାରା ନିର୍ବାହ କଲା । ସେ ଭାବିଲା ଜଗତରେ ତା'ର ଆପଣାର କେହି ନାହିଁ । ସେ ଏହିପରି ସ୍ୱାଧୀନ ବୃତ୍ତି ଅବଲମ୍ବନ କରି ଦୀନ ଦୁଃଖୀଙ୍କ ଯତ୍ କିଞ୍ଚିତ୍ ସେବା କରି ନିଜକୁ କୃତାର୍ଥ କରି-ପାରିବ । କାରଣ ସେ ଜଗତରେ ଯେଉଁ ଆଡ଼େ ଚାହିଁଲା ଖାଲି ଦେଖିଲା ସ୍ୱାର୍ଥ, ସ୍ୱାର୍ଥ । ଖାଇବା ଲାଗି, ବିଳାସ ଲାଗି, କାମନା ମେଣ୍ଟାଣ ଲାଗି ସମସ୍ତେ ଦିନ ରାତି ଜଗି ବସିଛନ୍ତି । ଚାରିଆଡ଼େ ସ୍ୱାର୍ଥର ଖେଳା, ସମସ୍ତେ ସ୍ୱାର୍ଥ ପିଶାଚର କରତଳଗତ । ସାମାନ୍ୟ ରମଣୀର ସ୍ୱାର୍ଥ ମେଣ୍ଟାଣରେ ତାଙ୍କ ଘରର ଏ ଦଶା । ସେଥିପାଇଁ ସେ ପ୍ରତିଜ୍ଞା କଲା ନିଜେ ନିଃସ୍ୱାର୍ଥ ଭାବେ ରହି ରୋଗୀ, ଦୁର୍ବଳ, ନିଃସହାୟର ସେବାରେ ତା'ର ଜୀବନ କଟାଇ ଦେବ । ଏହା ସ୍ଥିର କରି ସବୁ ମାନ, ଅପମାନ ପଛରେ ପକାଇ ସେ ତା'ର କ୍ଷୁଦ୍ର ଦୋକାନଟି ଚଳାଇବାକୁ ଲାଗିଲା ।

## —ଚଷାଳ—

ଯେଉଁଦିନ ନିଷ୍ଠୁର ମହାଜନ କରଜ ଟଙ୍କା ପାଇଁ ଘର ଖଣ୍ଡିକ ନିଲାମରେ ନେଇ ଶଶିପ୍ରଭାଙ୍କୁ ଦାଣ୍ଡର ଭିକାରୁଣୀ କରି ଘରୁ ବାହାର କରିଦେଲା, ସେ ଦିନର ଘଟଣା ଦେଖିଲେ ପଥର ସୁଦ୍ଧା ତରଳି ଯିବ । ମହାଜନଠାରୁ ତାଙ୍କୁ କଠୋର ତିରସ୍କାର ସହିବାକୁ ପଡ଼ିଥିଲା । ମାତ୍ର ଆଜିର ଦୃଶ୍ୟ ତାଙ୍କ ପକ୍ଷେ ଦୁଃସହ ହେଲା । ସ୍ୱାମୀ, ଧନ, ଲଜ୍ଜା ସବୁ ତାଙ୍କୁ ଛାଡ଼ିବାକୁ ପଡ଼ିଥିଲା । ପେଟ ପାଇଁ ହୀନ ବେଶ୍ୟାବୃତ୍ତିର ଆଶ୍ରୟ

ନେଇଥିଲେ । ସମ୍ବଳ ଥିଲା ଭଙ୍ଗା କୁଡ଼ିଆ ଖଣ୍ଡିକ । ଯେଉଁ ବିଶାଳ ଭବନଟି ଧନଧାନ୍ୟ ଦାସ ଦାସୀରେ ନିତ୍ୟ ମୁଖରିତ ହେଉଥିଲା, ଯେଉଁ ଉଦ୍ୟାନଟି ଫୁଲ ଫଳରେ ମଣ୍ଡିତ ହୋଇ ନୟନ ମନ ତୃପ୍ତ କରୁଥିଲା, ସେହି ଉଦ୍ୟାନ, ସେ ଭବନ ଆଜି ମରୁଭୂମିରେ ପରିଣତ । କେବଳ ସ୍ମୃତିର ଚିହ୍ନସ୍ୱରୂପ ଥିଲା ଭଗ୍ନ କୁଟୀରଟି । କେତେ କେତେ ଘଟଣାର ମୂକ ସାକ୍ଷୀପରି, ସେ ମଧ୍ୟ ଆଜିଗଲା । ତାଙ୍କ ନିଜର ମଧ୍ୟ ସେ ଗୌର ଅଙ୍ଗ ନାହିଁ, ସେ ଲଳିତ ଯୌବନ ନାହିଁ । ପାପର ଉତ୍କଟତାରେ ସବୁ ଧ୍ୱସ୍ତ, ବିକୃତ । ତାଙ୍କର ପିଶାଚ ହୃଦୟରେ ଜ୍ଞାନ ଆସିଛି । ସେ ଜଗତରେ ନୂତନ ଚିହ୍ନ ଦେଖୁଛନ୍ତି । ତାଙ୍କର ଶତ ଅତ୍ୟାଚାରର, ଅମାନୁଷିକ ପତି, ସନ୍ତାନ ହିଂସାର ଜୀବନ୍ତ ପ୍ରତିଫଳ ରୂପେ ଅଙ୍ଗେ ଅଙ୍ଗେ ବ୍ୟାଧି ଫୁଟି ଉଠିଛି । ଅନୁତାପ ତାଙ୍କ ହୃଦୟକୁ ଘାଣ୍ଟି ପକାଉଛି । ସେ ଦେଖୁଛନ୍ତି ସେହି ଜଳ, ପବନ, ନଦୀ, ପର୍ବତ, ଆକାଶରେ ସେହି ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ ତାରକା । ସୂର୍ଯ୍ୟର ସେହି କିରଣ ଅଛି । ଚନ୍ଦ୍ରର ସେହି ରଜତ ଜ୍ୟୋତ୍ସ୍ନା ଅଛି । କାହାରି ତ କିଛି ପରିବର୍ତ୍ତନ ଘଟିନାହିଁ । କିନ୍ତୁ ତାଙ୍କର କାହିଁକି ଏ ପରିବର୍ତ୍ତନ । ତାଙ୍କର ସେ ବିଶାଳ ଜମିଦାରୀ, ଧନ, ଧାନ୍ୟ, କାହିଁ ? ସେ ତୋଷାମଦକାରୀ ବନ୍ଧୁବର୍ଗ କାହାନ୍ତି ? ଯେଉଁମାନେ ପୈଶାଚିକ ସ୍ୱାର୍ଥର ମେଣ୍ଟନ ପାଇଁ ତାଙ୍କୁ ସ୍ୱର୍ଗର ଦେବୀ ସ୍ଥାନରେ ବସାଉ ଥିଲେ—ସେ ବୁଝି ପାରିଲେ ସେମାନେ ବନ୍ଧୁ ନୁହନ୍ତି । ନରକର କୀଟ ସେମାନେ, ତାଙ୍କର ପାପପଥ ପରିଷ୍କାରକ ।

ଦେବୋପମ ସ୍ୱାମୀଙ୍କୁ ସେ ଘୃଣାରେ ପାଦ ପ୍ରହାର କରିଛନ୍ତି । ରାକ୍ଷସୀ ରୂପେ ଅମାନୁଷିକ କାଣ୍ଡ ଘଟାଇବାକୁ ମନ୍ତ୍ରଣା ଦେଇଛନ୍ତି । ଅବହେଳାରେ ପ୍ରାଣ ମଧ୍ୟ ନେଇଛନ୍ତି । କମଳା ବୀଣାକୁ—ସରଳ ସୁକୁମାର ଶିଶୁ ପ୍ରାଣକୁ ପାଦରେ ଦଳି ଦେଇଛନ୍ତି । ପଦ୍ମକୁ ଗୃହତ୍ୟାଗୀ କରାଇଛନ୍ତି; କ'ଣ ନ କରିଛନ୍ତି ସେ ? ଅର୍ଥ ପାଇଁ ତିରସ୍କାର କରି,

ପତିଙ୍କ ଦ୍ୱାରା କଷ୍ଟର ଅତ୍ୟାଚାରର ତଳାଇ, ପ୍ରିୟତମା ପତ୍ନୀକୁ ସ୍ୱାମୀଠାରୁ, ନିରୀହ ସରଳ ଶିଶୁ ସନ୍ତାନକୁ ପିତାଠାରୁ ଯେ ଦୂର କରିଅଛନ୍ତି । ପ୍ରଜାଙ୍କ ରକ୍ତ ବିନ୍ଦୁ ନେଇ ଖେଳା କରିଛନ୍ତି । ବିଶେଷତଃ ପବିତ୍ର ସ୍ତ୍ରୀ ମର୍ଯ୍ୟାଦାରେ କଳଙ୍କ-କାଳିମା ଲେପିଛନ୍ତି । ଯେଉଁ ସ୍ତ୍ରୀର ହୃଦୟ ପବିତ୍ର ପତିପ୍ରେମ, କୋମଳ ସ୍ନେହ, କରୁଣା, ବାତ୍ସଲ୍ୟର ଆଧାର, ଯେଉଁ ଗୁଣ ଯୋଗୁଁ ସ୍ତ୍ରୀ ଜାତି ଜଗତରେ ଧନ୍ୟା, ମାନ୍ୟା, ଯୁଗେ ଯୁଗେ ଅର୍ଚ୍ଚିତା, ସେହି ମାତୃ-ଜାତିର ଅସ୍ମିତାରେ କାଳିମା ଲେପ କରିଛନ୍ତି ସେ । ସେ ସ୍ତ୍ରୀ ଜାତିପାଇଁ କି ଆଦର୍ଶ ରଖିଗଲେ ? ଏକଥା ତାଙ୍କ ମନରେ ଯେତିକି ଯେତିକି ପଡ଼ିଲା, ଅନୁତାପା-ନଳରେ ସେତିକି ସେତିକି ତାଙ୍କ ଅନ୍ତର ଜଳିବାକୁ ଲାଗିଲା । ଏଆଡ଼େ ରୋଗ ଯନ୍ତ୍ରଣା, ଅନ୍ୟଆଡ଼େ ଅନ୍ତରର ଜ୍ୱାଳା । ଏ ସମୟରେ ଶତ ବଜ୍ର ଯଦି ଛିଡ଼ି ପଡ଼ିଥାନ୍ତା, ତେବେ ତାଙ୍କର ଏ ଯାତନାକ୍ଲିଷ୍ଟପ୍ରାଣ କିଞ୍ଚିତ୍ ଶାନ୍ତି ଲାଭ କରିପାରି ଥାନ୍ତା । ମାତ୍ର ଉତ୍କଟ ପାପ କାର୍ଯ୍ୟର ଦଣ୍ଡଭୋଗ ଅଳ୍ପକାଳ ସ୍ଥାୟୀ ନୁହେଁ, ସେ ଏହା ବୁଝିପାରିଛନ୍ତି । ସେ ନିଶ୍ଚିତ ବୁଝିପାରିଛନ୍ତି ଯେ କୃତକର୍ମର ଫଳ ଭୋଗିବାପାଇଁ ତାଙ୍କୁ ଏହି ଦୈନ୍ୟ, ନୈରାଶ୍ୟ, ଦୁଃଖ ଯନ୍ତ୍ରଣା ଭିତରେ କାଳକାଟିବାକୁ ହେବ । ନିଜର ଛିଣ୍ଡାଲୁଗା ଖଣ୍ଡି ପିନ୍ଧି, ଛିଣ୍ଡା କନ୍ଥାଟିଏ ଥାଳି ଏବଂ ଖଣ୍ଡିଏ ପଥୁରି ସଙ୍ଗରେ ନେଇ ବାହାରିପଡ଼ିଲେ କୌଣସି ସ୍ଥାନରେ ଆଶ୍ରୟ ନେବାକୁ । ଦିନକ ପାଇଁ ସେ ତାଙ୍କର ବନ୍ଧୁଦିନର ଗୃହିଣୀ ଗୌରୀଗୃହରେ ଆଶ୍ରୟ ନେଇଥିଲେ । ଜମିଦାରଙ୍କ ଘରୁ ଗୌରୀ ପଳାଇ ଯାଇ ଖଣ୍ଡିଏ ସ୍ୱତନ୍ତ୍ର କୁଡ଼ିଆ ନିକଟବର୍ତ୍ତୀ ଗାଁରେ ତିଆରି, ପରର ମୂଲ ଲାଗି, ଧାନ କୁଟି ଉଦର ପୋଷଣ କରୁଥିଲା । ସେଠାରେ ପରିଚିତ ଲୋକଙ୍କୁ ମୁହଁ ଦେଖାଇ ରହିବା ଶଶିପ୍ରଭାଙ୍କ ପକ୍ଷରେ କଷ୍ଟକର ହେଲା । କେହି ମଧ୍ୟ ତାଙ୍କର ଏ ଦୁଃଖରେ ଟିକିଏ ସହାନୁଭୂତି ଦେଖାଇଲେ ନାହିଁ । ବରଂ ବେଶ୍ୟା ବୋଲି ସମସ୍ତେ ତାଙ୍କୁ ଦେଖି ଅନ୍ୟ ଆଡ଼େ ମୁହଁ ଫେରାଇ ଚାଲି ଯାଉଥିଲେ ।

ସେ ଭାବିଲେ ପାପର ପରିଣାମ ଏହା । ତାଙ୍କର ମସ୍ତିଷ୍କ କ୍ରମଶଃ ବିକୃତ ହୋଇ ଯାଉଥିଲା, ହାତଗୋଡ଼ ବ୍ୟାଧିଗ୍ରସ୍ତ ହୋଇ ଶିଥିଳ ହୋଇ ଯାଉଥିଲା, ତଥାପି ସେ ବସି ଉଠି ସେ ସ୍ଥାନ ମଧ୍ୟ ତ୍ୟାଗ କଲେ । ସେ ଜାଣି ପାରିଲେ ପାପକ୍ଳିଷ୍ଟ ଆତ୍ମାର ଯେପରି ପରଲୋକରେ ଶାନ୍ତି ନଥାଏ ବୋଲି ସେ ଶୁଣନ୍ତି, ସେ'ତ ଦୂରର କଥା, ତା'ର ଇହ ଲୋକରେ ମଧ୍ୟ ସୁଖ, ଶାନ୍ତି ନାହିଁ ।

## —ସତର—

ସେଦିନ ପାଗଟା ଥିଲା ଟିକିଏ ମେଘୁଆ । ନୈରାଶ୍ୟପରେ ଆଶାର ଝଟକା ପରି ଯେପରି କିଏ କୃଷ୍ଣ ପର୍ଦ୍ଦା ଟାଣି ସୁନେଲି କିରଣକୁ ମଧ୍ୟେ ମଧ୍ୟେ ଲୁଚାଇ ଦେଉଥିଲା । ଏହା ଆଲୋକ ଛାୟାର ଲୁଚକାଳି ଖେଳ ପ୍ରତି କାହାରି ଭ୍ରୂକ୍ଷେପ ନାହିଁ । ପ୍ରଭାତର କର୍ମ ପ୍ରେରଣା ଯେପରି କଟକ ନଗରବାସୀଙ୍କୁ ନବୀନ ଜାଗରଣରେ ମତାଇ ଦେଇଛି । ଯେ ଯାହାର କାର୍ଯ୍ୟରେ ବ୍ୟସ୍ତ । ବେଳ ପ୍ରାୟ ଅଠଟା ସମୟ ହେବ । ପଦ୍ମ ସକାଳୁ ଦୋକାନଟି ଫିଟାଇଥିଲା । ମାତ୍ର ପୁଣି ବନ୍ଦ କରିଦେଇ କୌଣସି କାର୍ଯ୍ୟୋଦ୍ଦେଶ୍ୟରେ ବାହାରି ପଡ଼ିଛି । ସେ ଠିକ୍ ବକ୍ସିବଜାର ଛକ ନିକଟରେ ପହଞ୍ଚିଥିଲା ବେଳକୁ ଦେଖେ ଖଣ୍ଡିଏ ମଇଲାବୁହା ଗାଡ଼ି ସେ ଆଡ଼ୁ ଆସୁଛି; ସଙ୍ଗରେ କେତେଜଣ ମେହେନ୍ତର । ନିତି'ତ କେତେ ମଇଲାବୁହା ଗାଡ଼ି ଏହିପରି କଟକ ସହରରେ ଚାଲିଛି । ଆଜି ଏ'ବି ମଧ୍ୟ ସେଥିଭିତରୁ ଖଣ୍ଡେ । ମାତ୍ର ଏ ମଇଲାବୁହା ଗାଡ଼ି ଭିତରେ ଜଣେ ଲୋକ କିଏ ଉପବିଷ୍ଟ ? ଲୋକଟିର ଚେହେରାରୁ ସ୍ତ୍ରୀ କି ପୁରୁଷ କିଛି ଚିହ୍ନି ହେଉ ନାହିଁ । କେବଳ ପରିଧାନଭଙ୍ଗୀରୁ ଜଣାପଡ଼ୁଛି ଏ ଜଣେ ସ୍ତ୍ରୀଲୋକ ବୋଲି । ରୂପ ଅତି କଦର୍ଯ୍ୟ ହୋଇଛି । ମୁହଁ ଦେହ ଚାରିଆଡ଼ ବଡ଼ ବଡ଼ ବ୍ରଣରେ ପୂର୍ଣ୍ଣ । ମାଛିଗୁଡ଼ା ଚାରିଆଡ଼ ଭଣ ଭଣ ହେଉଛନ୍ତି । ଆଖିଦିଓଟିରୁ ପୂଯର ଧାର ଲମ୍ବିଛି । ମୁଣ୍ଡର କେଶଗୁଡ଼ିକ ଜଟ ହୋଇ

ଗୃହଅଡ଼କୁ ଓହଳି ପଡ଼ୁଛି । ଲୁଗା ଖଣ୍ଡିଅତି ମଇଳା । ପୁଣି ସାତ'ଠା ଗଇଁଠା ହୋଇଛି । ସ୍ତ୍ରୀଲୋକଟି ଯନ୍ତ୍ରଣାରେ କି ଗୋଟାଏ ଅସ୍ଫୁଟ ଧ୍ୱନି କରି ବିକୃତ ଅଙ୍ଗଭଙ୍ଗି କରୁଛି । ତା'ର ସେହି ବେଦନା-ବ୍ୟଞ୍ଜିତ ଭାଷା ବୁଝି ହେଉ ନାହିଁ । ମାତ୍ର ଯେତେବେଳେ ଗାଡ଼ିଟି ଠିକ୍ ପଦ୍ମ ପାଖ ଅତିକ୍ରମ କରିବାକୁ ବସିଲା, ସେତେବେଳେ 'ମୋ ପଦ୍ମରେ' ବୋଲି ସେହି ବିକୃତ ସ୍ତ୍ରୀଲୋକଟିର କଣ୍ଠରୁ ଗୋଟିଏ କରୁଣ ଚିତ୍କାର ଫୁଟି ଉଠିଲା । ପଦ୍ମ ଏପରି ଜଣେ ରୋଗକ୍ଲିଷ୍ଟା ନାରୀଶ୍ରୟାର ମୁଖରୁ ନିଜର ନାମ ଉଚ୍ଚାରିତ ହେବା ଶୁଣି ହାଠାତ୍ ଚମକି ପଡ଼ିଲା । ସେ ବିକୃତ ରୂପ ଦେଖି କିଛି ଚିହ୍ନି ପାରିଲା ନାହିଁ । କିନ୍ତୁ ପରିଚିତ କଣ୍ଠସ୍ୱରରୁ ଜାଣିନେଲା ଏ ତା'ର ସେହି ହତଭାଗିନୀ ମା । ତା'ର ମନରେ ହଠାତ୍ ନିଃସନ୍ଦେହତା ସ୍ଥାନ ପାଇଲା ନାହିଁ । ଭାବିଲା, ଅସମ୍ଭବ, ଅସମ୍ଭବ, ରୂପଯୌବନ-ଗର୍ବିତା ଅତୁଳ ଐଶ୍ୱର୍ଯ୍ୟର ଅଧିକାରିଣୀ ଶଶିପ୍ରଭା କାହିଁ, ନରକ ଯାତନା ଜର୍ଜରିତା ଏ ଭୂଷିତା ନାରୀ କାହିଁ । ଏ ମନର ବାତୁଳ କଳ୍ପନା ମାତ୍ର । ପରକ୍ଷଣରେ ତା'ର ସବୁ ସଂଶୟ ଦୂରୀଭୂତ ହୋଇଲା । ସେହି ନାରୀକଣ୍ଠରୁ ଆଉ ଥରେ ବାହାରି ପଡ଼ିଲା, 'ପଦ୍ମ, ତୋର ମା'କୁ ଚିହ୍ନି ପାରୁନାହୁଁ ?' ପଦ୍ମର ସବୁ ଭ୍ରାନ୍ତି କାହିଁ ମିଳାଇ ଗଲା । ପଦ୍ମ ବୋଧ କଲା ଯେପରି ତା'ର ପଦତଳୁ ପୃଥିବୀ ଅସ୍ତେ ଅସ୍ତେ ଦୁଳୁଚି ଦୁଳୁଚି ଯାଉଛି । ଗଛଲତା ମନୁଷ୍ୟ ପକ୍ଷୀ ନିଜେ ମଧ୍ୟ ସେମାନଙ୍କ ସହିତ ବୁଲୁଛି । ପଲକରେ ଶଶିପ୍ରଭାଙ୍କ ଅତୁଳନୀୟ ରୂପ ସୌନ୍ଦର୍ଯ୍ୟ, ଗର୍ବ, କ୍ଷମତା କାଲି ପରି ତା'ର ଆଖି ଆଗରେ ନାଚି ଉଠୁଛି, ସେ କିଛି ଭାବି ପାରୁ ନାହିଁ ? କିଛି ଜାଣି ପାରୁ ନାହିଁ । ସେ ବା ଜାଣିବ କ'ଣ ? କାଲିର ପିଲା ସେ, କେବଳ ନିଜ ଜୀବନରେ ନିୟତିର ଅଦ୍ଭୁତ ଖେଳର ସାମାନ୍ୟ ସୂଚନା ପାଇଛି ମାତ୍ର । ସ୍ୱପ୍ନପରି, ମାୟାପରି, ହଠାତ୍ ଐନ୍ଦ୍ରଜାଲିକ ପ୍ରକ୍ରିୟା ପରି ତାକୁ ଏ ସବୁ ପ୍ରତୀତ ହେବାକୁ ଲାଗିଲା । ମୁହୂର୍ତ୍ତକ ମଧ୍ୟରେ ତା'ମନରେ ଏତେଗୁଡ଼ାଏ ଆନ୍ଦୋଳନ

ଉଠିଥିଲେ ମଧ୍ୟ ସେହି ନିରାଶ୍ରୟା ବ୍ୟାଧିଗ୍ରସ୍ତା ମାତାର ଦୁର୍ଦ୍ଦଶା ଦେଖି ତା'ର ପୂର୍ବସଞ୍ଚିତ ଘୃଣା, ଅଭିମାନ କେଉଁଆଡ଼େ ଉଭେଇଗଲା । ସେ ଭାବିଲା ତାଙ୍କଠାରୁ ଶତ ଲାଞ୍ଛନା, ତିରସ୍କାର, ତାଡ଼ନା ପାଇଥିଲେ ମଧ୍ୟ, ସେ ନିଜର ପବିତ୍ର ବଂଶମର୍ଯ୍ୟାଦାରେ କଳଙ୍କ କାଳିମା ଲେପିଥିଲେ ମଧ୍ୟ, ବିପୁଳ ଜମିଦାରୀ ଧନ ସମ୍ପତ୍ତି ବିଳାସରେ ଛାରଖାର କରିଥିଲେ, ମଧ୍ୟ ନିଜର ପିତାଙ୍କୁ, ସ୍ନେହର ବାଣାକୁ ନାନା ନିର୍ଯ୍ୟାତନା ଦେଇଥିଲେ ସୁଦ୍ଧା, ସେ ନିଜର'ତ ମା, ପିତାଙ୍କର ବିବାହିତା ଭାର୍ଯ୍ୟା । ସେ ତାଙ୍କୁ'ତ ସେହି ସମ୍ବୋଧନରେ ମାତୃ ଅଧିକାର ଦେଇଛି, ତା'ର ତ ମନୁଷ୍ୟର ହୃଦୟ ଅଛି, କର୍ତ୍ତବ୍ୟ ଜ୍ଞାନ ଅଛି, ଅନ୍ତରରେ ସ୍ନେହ, ଦୟା ଅଛି । ସେଥିପାଇଁ ସେ ଯେତେବେଳେ ହତଭାଗିନୀକୁ ମା ଠୁ ବୋଲି ଜାଣିଲା, ସେତେବେଳେ ତା'ର ହୃଦୟ କି ଏକ କରୁଣ ରସରେ ପୂରିଗଲା । ସେ ଆଉ ଲୋତକ ସମ୍ବରଣ ନ କରି ରହି ପାରିଲା ନାହିଁ ଅବ୍ୟକ୍ତ ବେଦନା ବୁକୁଠା-ଭିତରେ ଯେପରି ତରଳି ଯାଇ ଟପ୍ ଟପ୍ ହୋଇ ଲୋତକ ଆକାରରେ ଗଳି ପଡ଼ିଲା !

ସେ ଗାଡ଼ି ରଖାଇ ଖଣ୍ଡିଏ ଘୋଡ଼ାଗାଡ଼ି କରି ସେଥିରେ ତାଙ୍କୁ ବସାଇଲା । ନିଜର ଚଦର ଖଣ୍ଡି ଘୋଡ଼ି ହେବାପାଇଁ ଦେଲା । ବସାକୁ ନେଇ ସେଠାରେ ତାଙ୍କୁ ପରିଷ୍କୃତ ପରିଚ୍ଛନ୍ନ କରି ଭଲ ରକମ ଖାଇବାକୁ ଦେଲା । ଭଲ ଲୁଗା ପିନ୍ଧିବାକୁ ଦେଇ ଅପରବେଳା ତାଙ୍କୁ ସହର ଡାକ୍ତର-ଖାନକୁ ଚିକିତ୍ସା ଅଭିପ୍ରାୟରେ ନେଲା । ପଦ୍ମକୁ ଡାକ୍ତରଖାନାରେ ମଧ୍ୟ ପଡ଼ି ରହିବାକୁ ହେଲା । ଖାଇବାବେଳେ ଦୁଇଥର କେବଳ ସେ ବସାକୁ ଆସେ ମାତ୍ର । ସେ ଭାବିଲା ଏହି ମୋର ଚରମ କର୍ତ୍ତବ୍ୟ । ସେଥି ପାଇଁ ଶଶିପ୍ରଭାଙ୍କର ଯାହା ଯେତେବେଳେ ଦରକାର ହେଉଥିଲା, ସେ ସବୁ ଯୋଗାଇବାକୁ ସେ ତିଳେ ମାତ୍ର ତ୍ରୁଟି କଲା ନାହିଁ । ଦୁଃଖକ୍ଲିଷ୍ଟା ଶଶିପ୍ରଭା ମଧ୍ୟ ଯେଉଁ ପଦ୍ମକୁ ଜୀବନକଣ୍ଟକ ବୋଲି ମନେ କରୁଥିଲେ, ଏ ଅନ୍ତିମ

ଜୀବନରେ ତା'ଠାରୁ ଏପରି ବ୍ୟବହାର ପାଇ ତାକୁ ଏକମାତ୍ର ଅବଲମ୍ବନ ବୋଲି ସ୍ଥିର କରି ଅତୀତ କାର୍ଯ୍ୟ ମନେ ପକାଇ, ଲଜ୍ଜିତା ଓ ଅନୁତପ୍ତା ହେଉଥିଲେ । ଏ ଦୁର୍ଦ୍ଦଶାରେ ସେ ଅଶ୍ରୟ, ଅଶ୍ୱାସନା ଖୋଜି ବୁଲୁଥିଲେ । ତାଙ୍କର ବିଶ୍ୱାସ ନ ଥିଲା ସେ ପଦ୍ମକୁ ଦେଖିବେ ବା ତା'ଠାରୁ ଏପରି ବ୍ୟବହାର ପାଇବେ ବୋଲି । ଜଗତରେ ଯେ ଯାହାପ୍ରତି ଯେପରି ବ୍ୟବହାର କରେ, ତା'ଠାରୁ ସେପରି ବ୍ୟବହାର ଆଶା କରିବା ସ୍ୱାଭାବିକ । ମାତ୍ର ସେ ଆଜି ପଦ୍ମଠାରୁ ଯାହା ପାଇଛନ୍ତି ତାହା ତାଙ୍କ ପକ୍ଷେ ସ୍ୱର୍ଗର ଦାନ । ଭଗବାନଙ୍କ ଅନୁକମ୍ପା ବ୍ୟତୀତ କଅଣ ହୋଇପାରେ ? ସେଥିପାଇଁ ତାଙ୍କ ହୃଦୟ କହି ଉଠୁଥିଲା, 'ଧନ୍ୟ ପଦ୍ମ, ଏ ଦ୍ୱିଷୀପ୍ରତି ତୋର ଦୟାକୁ ଶତ ଧନ୍ୟବାଦ ।

## —ଅଠର—

ଶଶିପ୍ରଭା ଡାକ୍ତରଖାନାକୁ ଆସିବାର ଦୁଇ ଦିନ ଗଲାଣି । ଯଥାମତ ସେବା, ଚିକିତ୍ସା ଚାଲିଛି । ରୋଗର ମାତ୍ରା କିଛି କମୁ ନାହିଁ । ପ୍ରଳାପ ମଧ୍ୟ ବଢ଼ିଛି । ପଦ୍ମ ଶଶିପ୍ରଭାଙ୍କର ଏ ଶୋଚନୀୟ ପରିଣାମ କିପରି ଘଟିଲା ଅନୁସନ୍ଧାନ କରି ଗାଁ ଲୋକଙ୍କଠାରୁ ଜାଣି ପାରିଛି । ଦିନେ ମଧ୍ୟ ଦୁଃଖର ଆତିଶଯ୍ୟରେ ବେଦନାଭରା ମନସ୍ତାପର ଲାଘବ ପାଇଁ ପଦ୍ମକୁ ସ୍ୱୀୟ ଶୋଚନୀୟ ଜୀବନର ଶେଷ ଇତିହାସ ଶଶିପ୍ରଭା କଥାଛଳରେ କହିଛନ୍ତି । ପଦ୍ମ ଜାଣିଛି ତାଙ୍କ ଘରଧ୍ୱଂସର ଓ ଏ ଦୁର୍ଦ୍ଦଶାର ମୂଳ କାରଣ ନିଜେ ଶଶିପ୍ରଭା । ପ୍ରକୃତରେ ସୁରେଶବାବୁଙ୍କ ମୃତ୍ୟୁ ପରେ ଶଶିପ୍ରଭାଙ୍କ ଚରିତ୍ର ଦୋଷ ଅତ୍ୟଧିକ ବୃଦ୍ଧି ପାଇଲା । ଘର ଦ୍ୱାର ସମ୍ପତ୍ତି ବାଡ଼ି ନିଲାମ ହେବା ସଙ୍ଗେ ସଙ୍ଗେ ଖାଦ୍ୟର ମଧ୍ୟ ଅଭାବ ହେଲା । ସ୍ୱାର୍ଥର ପ୍ରରୋଚନାରେ, କେତେବେଳେ ବା କ୍ଷୁଧାର ତାଡ଼ନାରେ ଶଶିପ୍ରଭା ବେଶ୍ୟାବୃତ୍ତି ଅବଲମ୍ବନ କଲେ । ପାପର ପରିଣାମସ୍ୱରୂପ ତାଙ୍କର ଅଙ୍ଗେ ଅଙ୍ଗେ ବ୍ୟାଧି ଫୁଟି ଉଠିଲା । ପ୍ରଦର, ଉପଦଂଶ ପ୍ରଭୃତି ଭୟାବହ ବ୍ୟାଧି-

ଗୁଡ଼ିକ ତାଙ୍କର ସବୁ ଶରୀର ଅଧିକାର କଲା । ଦେହ ଫୁଲିଲା । ଗୌର ଅଙ୍ଗ ଅତି ବିବର୍ଣ୍ଣ ଓ ବିକୃତ ହୋଇଗଲା । ଦେହ ମୁଣ୍ଡ ଗୋଡ଼ ଆଦି ବ୍ରଣରେ ପୂରି-ଗଲା । ଦୃଷ୍ଟି ଶକ୍ତି ହ୍ରାସପାଇ ଗୋଟିଏ ଆଖିରୁ ଅବିଶ୍ରାନ୍ତ ପୂଜ ବୋହିବାକୁ ଲାଗିଲା । କେତେବେଳେ ଜ୍ୱର, କେତେବେଳେ ଭ୍ରମ ପ୍ରଭୃତି ଆନୁସଙ୍ଗିକ ଉପସର୍ଗ ଗୁଡ଼ିକ ଦେଖାଗଲା । ଯେଉଁମାନେ ରୂପର ମୋହରେ ପ୍ରଣୟର ବଶବର୍ତ୍ତୀ ହୋଇ ଶଶିପ୍ରଭାଙ୍କୁ ଦଣ୍ଡେ ନ ଦେଖିଲେ ବାଉଳା ହେଉ-ଥିଲେ, ସେମାନେ ଆଜି ଆଖିରେ ଟିକିଏ ସୁଦ୍ଧା ଚାହୁଁଲେ ନାହିଁ । ଧନ୍ୟ ଜଗତ୍ । ଶଶିପ୍ରଭା ଯେଉଁ ଯୌବନର ଉନ୍ମାଦନାରେ ପତି-ଦେବତାଙ୍କୁ ପାଦରେ ଠେଲି ଦେଉଥିଲେ, ଦର୍ପରେ ପୃଥିବୀ ଥରାଇ ଦେଇ ପୈଶାଚୀ କାମନା ମେଣ୍ଟାଉ କରୁଥିଲେ, ସେ ଯୌବନ କାହିଁ ? ଯେଉଁମାନଙ୍କୁ ଜୀବନର ପ୍ରିୟ, ଅତିପ୍ରିୟ ବୋଲି ବରଣ କରିଥିଲେ, ସେମାନେ ଆଜି କାହାନ୍ତି ? କ୍ରମେ ସେତେବେଳେ ଶଶିପ୍ରଭା କ୍ଷୁଧାର ଜ୍ୱାଳା, ରୋଗର ଯନ୍ତ୍ରଣାରେ ଦିନୁଁଦିନ ଶୀର୍ଣ୍ଣ ହେବାକୁ ଲାଗିଲେ । ଏହି ସମୟରେ ମହାଜନ ବାକି ଟଙ୍କା ପାଇଁ ଘରଖଣ୍ଡି ଅଧା ନିଲାମ କରିନେଲା ! ଖାଦ୍ୟ-ହୀନା, ବାସହୀନା, ସହାୟ ସମ୍ବଳହୀନା ହୋଇ ସେ ପରିଚିତା ଗୌରୀ-ଘରେ ଆଶ୍ରୟ ନେଲେ । ରୂପହୀନ, ବ୍ୟାଧିଗ୍ରସ୍ତ ଶରୀର ନେଇ ପର ପିଣ୍ଡାରେ, ଓଳିଉଳି କେତେଦିନ ବା ଆଶ୍ରୟ ନେବେ । ଖାଦ୍ୟ ବା କାହିଁ ? ତାଙ୍କର ବିକୃତ-ରୂପ ଦେଖି ଘୃଣାରେ ତାଙ୍କୁ ସମସ୍ତେ କଥା ପଦେ କହିବାକୁ ସୁଦ୍ଧା କୁଣ୍ଠିତ ହେଲେ । ଯେଉଁମାନେ ସମୟରେ ତାଙ୍କ କୃପାରୁ ପଦମର୍ଯ୍ୟାଦା ଲାଭ କରିବା ପାଇଁ, ପ୍ରୟୋଜନବଶତଃ ଜମିଦାରଙ୍କ ଦାଉରୁ ରକ୍ଷା ପାଇବା ପାଇଁ, ତାଙ୍କୁ ଦିନରାତି ଯୋଡ଼ହସ୍ତରେ ପ୍ରାର୍ଥନା କରୁଥିଲେ, ସେମାନେ ଆଜି ତାଙ୍କୁ କଳଙ୍କିନୀ ଛତରଖାଇ ପ୍ରଭୃତି ତିରସ୍କାର କଲେ । ଦାଣ୍ଡର ଭିକାରୁଣୀ ବେଶରେ ରୁଗ୍ଣ ଶରୀର ଢେଳ ଛିନ୍ନ ମଇଳା ବସ୍ତ୍ର ପିନ୍ଧି ପରଦ୍ୱାରରେ କପର୍ଦ୍ଦ ବା ରହନ୍ତେ । ଅଗତ୍ୟା

କ୍ୟଥାଜର୍ଜରିତ ଦୁର୍ବଳ ଶରୀର ଧରି ସେ ଚର୍ଚ୍ଚିକା ଅଭିମୁଖରେ ଗଲେ ।
ଡାକ୍ତରଖାନାରେ ରହିବାରେ ତାଙ୍କର ଦୁଇଟି ଉଦ୍ଦେଶ୍ୟ ଥିଲା । ଖାଦ୍ୟ ପାଇବା ସଙ୍ଗେ ସଙ୍ଗେ ରୋଗରୁ ମୁକ୍ତ ହେବା ।

ସେଠାରେ ମଧ୍ୟ ବାଟରେ ଘାଟରେ ଯେଉଁଠାରେ ଶୁଣିଲେ ତାଙ୍କର ଅପବାଦ । ମାତ୍ର ସବୁ ସହି ତାଙ୍କୁ ସେଠାରେ ପଡ଼ି ରହିବାକୁ ହେଲା । ସେ ମାସେ ଖଣ୍ଡେ ଡାକ୍ତରଖାନାରେ ପଡ଼ି ରହିଲେ, ଔଷଧ ଖାଇଲେ; କିନ୍ତୁ ରୋଗ କମିବା ତେଣିକି ଥାଉ, କ୍ରମଶଃ ବୃଦ୍ଧି ପାଇବାକୁ ଲାଗିଲା । ବରଂ ଆଉ ଅଧିକ ଖରାପ ହୋଇ ଆସୁଥିଲା । ଘା' ଗୁଡ଼ିକ ବ୍ୟାପୁଥିଲା । ପ୍ରଳାପ, ଭ୍ରମ, ଅବସାଦ ମଧ୍ୟ ବଢ଼ୁଥିଲା । ଶେଷରେ ତାଙ୍କୁ ବାଳ୍ୟ ଡାକ୍ତରଖାନାରୁ ବିଦାୟ ନେବାକୁ ହେଲା । ରୋଗର ଯନ୍ତ୍ରଣା ପୁଣି ଉଦର ଜ୍ୱାଳା । ଚାଲିବାକୁ ଦେହରେ ବଳ ନାହିଁ । ହାତ ଗୋଡ଼ ଥରୁଛି । ଆଖିକୁ ଭଲ ଦେଖା ଯାଉ ନାହିଁ । ମୁଣ୍ଡ ଭ୍ରମ ହେଉଛି । ଘା' ଗୁଡ଼ିକରୁ ଅବଶ୍ରାନ୍ତ ପୂଜ ବୋହିବା ଦ୍ୱାରା ମାଛି ଗୁଡ଼ାକ ଅସ୍ଥିର କରି ପକାଉଛନ୍ତି । ଏ ଅବସ୍ଥାରେ ତାଙ୍କୁ ଗଛତଳେ ଆଶ୍ରୟ ନେବାକୁ ପଡ଼ୁଛି । କପର ଭିକ ମଗାଯାଏ ତା' ସେ ଜାଣନ୍ତି ନାହିଁ । ସେ ନିଜେ ବହୁବାର ଏ ଅବସ୍ଥାରୁ ତାଙ୍କୁ ମୁକ୍ତ ହେବାପାଇଁ ମୃତ୍ୟୁ ଦେବତାଙ୍କୁ ଆବାହନ କରିଛନ୍ତି । ସେ ମଧ୍ୟ ତାଙ୍କ ପ୍ରାର୍ଥନା ଶୁଣିବାକୁ କୁଣ୍ଠିତ । ବାଧ୍ୟ ହୋଇ ସେ ଭିକ୍ଷା ବୃତ୍ତି ଅବଲମ୍ବନ କଲେ । ଅବଶ୍ୟକତା ମନୁଷ୍ୟକୁ ବାଟ ଦେଖାଏ । ଲଜ୍ଜା ସଙ୍କୋଚ କିଛି ନାହିଁ । ସେ ବାଉଳା, କ'ଣ କରୁଛନ୍ତି, କ'ଣ କହୁଛନ୍ତି, ତାଙ୍କର ସେ ବାହ୍ୟ ଜ୍ଞାନ ନାହିଁ । ଅବଶ ହେଲାବେଳେ ପିଣ୍ଡାତଳେ ବା ରାସ୍ତା ପାର୍ଶ୍ୱରେ ଶୋଇ ପଡ଼ୁଛନ୍ତି । କ୍ଷୁଧା ହେଲେ ମିଳିଲେ ଭାତ ଗଣ୍ଡେ, ନଚେତ୍ ଗୁଡ଼ିଲ ବା ଭୁଜାରୁ ମୁଠିଏ ଖାଉଛନ୍ତି । ଦେହରେ ଅଣ୍ଟୁଏ ଧୂଳି ଲାଗିଛି । କେଉଁଆଡ଼େ କେଉଁ ଦିନ ଯାଉଛନ୍ତି, ତାଙ୍କର ଜ୍ଞାନ ନାହିଁ । ଏହିପରି କେତେଦିନ କେତେ ରାତି, ସେ

ଗ୍ଲଛନ୍ତି ଅନାର୍ଦ୍ଦିଷ୍ଟ ଭବେ । ଶେଷରେ ଯେଉଁଦନ ପଦ୍ମ ସହତ ତାଙ୍କର ଦେଖା ହେଲ୍, ସେଦନ ସେ ଅସୁ ଅସ୍ତ କଣ୍ଠକରେ ପଡ଼ିଥିଲେ । ଗଳ ରସ୍ତାରେ ନତାନ୍ତ କଦର୍ଯ୍ୟ ଅବସ୍ଥାରେ ପଡ଼ି କେତେଜଣ ଭଦ୍ରଲ୍ଲେକଙ୍କ ଅନୁରୋଧରେ ମେହେନ୍ତରଙ୍କ ଦ୍ୱାର୍ ମଇଳାବୁହା ଗାଡ଼ିରେ ସେଦନ ସେ ଡ଼ାକ୍ତରଖାନାକୁ ନଆଯାଉଥିଲେ ।

ଯାହାହେଉ ପଦ୍ମ ଅବରତ ପରଶ୍ରମ କର୍ବାରେ ଲଗିଛ । ତା'ର ଅଟଳ ପ୍ରତଜ୍ଞା ସେ ନଦ୍ଶୟା ଶଶିପ୍ରଭଙ୍କ ସକାଶେ ପ୍ରାଣପାତ ଚେଷ୍ଟା କର୍ବ, ତେଣିକ ତା ଭ୍ଗ୍ୟରେ ଯାହା ଥିବ, ସେଥିନମନ୍ତେ ସେ ଡାକ୍ତର କମ୍ପାଉଣ୍ଡର ସମସ୍ତଙ୍କୁ ଏକାନ୍ତ ଅନୁରୋଧ କରୁଛ । ତା'ର ହତଭାଗିନୀମାନଙ୍କୁ ରୋଗଯନ୍ତ୍ରଣାରୁ ମୁକ୍ତ କରବା ପାଇଁ ।

## —ଉନଶଇଶ—

ଆକାଶ କଳା ବଉଦରେ ଆଚ୍ଛନ୍ନ ଥିବାଯୋଗୁଁ ସୂର୍ଯ୍ୟ ବୁଡ଼ଲେଣି କ ନାହିଁ ଜଣା ପଡ଼ୁନାହିଁ । ଥରକୁଥର ମେଘ ଗର୍ଜି ପାଣି ଝଜାଡ଼ି ଦେଉଛ । ମୂଷଳ ଉଠାଣ ମେଘ ସଙ୍ଗେ ଝଞ୍ଜା ପବନ ବୋହ ଘରୁ ଆଉ ବାହାର କର ଦେଉ ନାହିଁ । ସକାଳୁ ଅବଶ୍ରାନ୍ତ ବର୍ଷା ଚାଲିଛି । ଯେ ଯେଉଁଠାରେ, ସେ ସେହଠାରେ ଭୂନଷ୍ଟ ହୋଇ ବସିରହଛ । ଅସରଏ ପରେ ଆହୁର ଅସର୍ଏ । ଲ୍ଲେକମାନେ କାମ ଧନ୍ଦାକୁ ଯିବାକୁ ସମୟ ଟିକଏ ପାଉ ନାହାନ୍ତି । ବଜାରକୁ ଯାଇ ସାମାନ୍ୟ ସଉଦା ଅଣିବା ଲ୍ଲେକଙ୍କ ପକ୍ଷେ ଦୁଷ୍କର ହୋଇ ପଡ଼ିଛ । ଗୋରୁ ଘୋଡ଼ା ସେହପର ଖୁଣ୍ଟରେ ଭିଡ଼ା ହୋଇଛନ୍ତି । କେତେ ପକ୍ଷୀ ଝଡ଼ ପବନ ଅଘାତରେ ଗଛତଳେ ମର ପଡ଼ିଛନ୍ତି । ବନ୍ୟା ଜଳରେ ଗ୍ରାମ ଅଞ୍ଚଳ ପ୍ଲାବିତ; କଟକପର ସହର ରସ୍ତାରେ ଗୋଟିଏ ସୁଦ୍ଧା ଲ୍ଲେକ ଦେଖାଯାଉ ନାହାନ୍ତି ! ପଦ୍ମ ଏହି ଦୁର୍ଦିନରେ ବସାରେ ଗଣ୍ଡେ ଖାଇଦେଇ ପାଣି ପବନ ନ ମାନି ଡାକ୍ତରଖାନାକୁ ଦୌଡ଼ିଛି । ତା'ର ବର୍ଷା ପ୍ରତି ଭ୍ରୂକ୍ଷେପ ନାହିଁ ।

ଖାଇବା ପିଇବାରେ ସ୍ପୃହା ନାହିଁ । ଶଶିପ୍ରଭା ଅସିବାଦନ୍ତୁ ତାକୁ ଏହିପରି କେତେ ରାତି ଉନ୍ନିଦ୍ରାଭାବରେ ଅନାହାରରେ କଟାଇବାକୁ ପଡ଼ୁଛି । ସେ ଜାଣିଛି, ଏହି ତା'ର ଶେଷ କର୍ତ୍ତବ୍ୟ । ଅତ୍ୟାଗୃତ ଲାଞ୍ଛନାର ଉପଯୁକ୍ତ ପ୍ରତିଦାନ କୋମଳ ଉକ୍ତି, ସବାଙ୍ଗ ଦୟା ଓ ବର୍ଣ୍ଣନ ମଧୁର ବ୍ୟବହାର । ସେ ଏହି କର୍ତ୍ତବ୍ୟ ସଂପାଦନରେ ଟିକିଏ ମାତ୍ର ଅବ-ହେଳା ପ୍ରଦର୍ଶନ କରନାହିଁ ବରଂ ସଞ୍ଚିତ ଅର୍ଥ, ବସ୍ତ୍ରସବୁ ଅକାତରରେ ମୁକ୍ତି ଦେଉଛି ମାତୃସେବାରେ । ଡାକ୍ତରଙ୍କ ଉପଦେଶମତେ ଫଳ ପ୍ରଭୃତି ଯୋଗାଇ ଶ୍ରଦ୍ଧମତ ପଥ୍ୟାଦିର ବ୍ୟବସ୍ଥା କରୁଛି । ସେ ନିଜର ତୁଚ୍ଛ ସ୍ୱାର୍ଥକୁ ବିସର୍ଜନ ଦେଇ ଏହି ସେବାରେ ଗୋଟାଏ ସ୍ୱର୍ଗୀୟ ଆନନ୍ଦ ଉପଭୋଗ କରୁଛି ।

ଶଶିପ୍ରଭାଙ୍କ ଦେହ ଟିକିଏ ଭଲ ଥିବାର ସକାଳେ ଦେଖାଗଲା । ପଦ୍ମମଧ୍ୟ ନିଜ ପରିଶ୍ରମ ସଫଳ ହୋଇଛି ଭାବି କଥିତ୍ ଆଶ୍ୱାସନା ଲାଭ କରିଛି । ସେ ଏ ଦୁର୍ଦ୍ଦିନରେ ମା'ର ମୁହଁକୁ ଚାହିଁ ଅନବରତ ବସି ରହିଛି । ବର୍ଷା ପୂର୍ବରୁ ଶାନ୍ତପ୍ରକୃତିର ମୂର୍ତ୍ତି ପରି ଶଶିପ୍ରଭାଙ୍କ ଏ ଅବସ୍ଥା ଦେଖାଗଲା । ଠିକ୍ ସନ୍ଧ୍ୟାବେଳକୁ ଶଶିପ୍ରଭାଙ୍କ ପ୍ରଳାପ କ୍ରମଶଃ ବୃଦ୍ଧି-ପାଇବାକୁ ଲାଗିଲା । କେତେବେଳେ, କ'ଣ କହୁଥିଲେ ତାହା ବୁଝିବା ଦୁରୂହ । ଯେପରି ତାଙ୍କର ସାରା ଜୀବନର ବିଚିତ୍ର କାର୍ଯ୍ୟାବଳୀ ସେହି ପ୍ରଳାପଭିତରେ ପ୍ରଚ୍ଛନ୍ନ ଥିଲା । ସେହି ପ୍ରଳାପ ଭିତରେ ଥରେ ଥରେ ହୃଦ୍ଭେଦୀ ଚିତ୍କାର ଅନ୍ୟାନ୍ୟ ରୋଗୀଙ୍କ ଶାନ୍ତି ଭଙ୍ଗ କରୁଥିଲା । ପଦ୍ମ ଆଶ୍ୱାସନା ଦେଇ ନୀରବ ହେବାକୁ ଅନୁରୋଧ କରୁଥିଲା । ମାତ୍ର ଶଶିପ୍ରଭାଙ୍କର ବାହ୍ୟ ଜ୍ଞାନ ନଥିଲା । ନିଜର ଅଯତ୍ନରେ ନିଜକୁ ସେ ରଖିପାରୁ ନ ଥିଲେ । ଯେତେବେଳେ ଜ୍ଞାନ ଆସୁଥିଲା, ସେତେବେଳେ ସେ କେତେକ ମୁହୂର୍ତ୍ତି ପାଇଁ ଚୂପ୍ ହୋଇ ରହୁଥିଲେ । ବିନ୍ଦୁ ଜ୍ଞାନଲୋପ ସଙ୍ଗେ ତାଙ୍କର ପ୍ରଳାପ ଓ ଚିତ୍କାର ବୃଦ୍ଧି ପାଉଥିଲା ।

ଠିକ୍ ଯେତେବେଳେ ବାରଟା ସମୟ, ଜଳଧାରାରେ ପଥ ଘାଟ ଗୃହଅଡ଼ ପ୍ଲାବିତ, ମେଘର ଘଡ଼ଘଡ଼ ଶବ୍ଦ ଓ ବିଜୁଳିର ଚମକ ସଙ୍ଗେ ଘୋର ନୈଶ ଅନ୍ଧକାର ମିଶି ଯେତେବେଳେ ମନୁଷ୍ୟମନରେ ସ୍ୱାଭାବିକ ଭୀତି ସଞ୍ଚାର କରୁଛି, ସେହି ବିଭୀଷିକାମୟୀ ରଜନୀରେ ଶଶିପ୍ରଭାଙ୍କ ଚିତ୍କାର ଅତ୍ୟନ୍ତ ବିକଟତର ହେଲା । ବିଶେଷତଃ ଶଶିପ୍ରଭାଙ୍କ ସେହି ପୈଶାଚିକା ମୂର୍ତ୍ତି ମଧ୍ୟରୁ ଭୀଷଣ ବିହ୍ୱାଟ ଧ୍ୱନି ଯେକୌଣସି ଦାମ୍ଭିକ ଲୋକର ମଧ୍ୟ ଭୟ ଆଣିବାର କଥା । କେଶପାଶ ମୁକୁଳିତ, ଦେହର ସର୍ବାଙ୍ଗ ପୂଯ-ସ୍ରାବୀ ବ୍ରଣରେ ପୂର୍ଣ୍ଣ । ନିଜେ ଅର୍ଦ୍ଧ ଉଲଗ୍ନ, ସେହି ଅବସ୍ଥାରେ ରୋଗିଣୀ ଶଶିପ୍ରଭା ଶଯ୍ୟାରୁ ଉଠି ନିଜ ବସ୍ତ୍ର ନିକ୍ଷେପ କରି, ଦନ୍ତରୁ ଦନ୍ତ ଘର୍ଷଣ କରି ଚିତ୍କାର କରିବା ସଙ୍ଗେ ସଙ୍ଗେ ଉନ୍ମାଦିନୀ ତୁଲ୍ୟ ନୃତ୍ୟ କରିବାକୁ ଲାଗିଲେ ! କି ତାଣ୍ଡବ ସେ ! ଯେଉଁ ଅବସ୍ଥାରେ ଦୁଇଜଣ ଲୋକ ଧରି ତାଙ୍କୁ ଶଯ୍ୟାରୁ ଉଠାଉଥିଲେ, ସେ ଅବସ୍ଥାରେ ରୋଗିଣୀ ନିଜେ ଶଯ୍ୟାରୁ ଉଠି ନୃତ୍ୟ କରିବା ଦେଖି ସମସ୍ତେ ଏହା ପୈଶାଚୀ ଲୀଳା ବୋଲି ଭାବି ବିସ୍ମିତ ହେଲେ । ସେହି କୋଳାହଳ ଚିତ୍କାରରେ କୋଠାର ଛାତ ଯେପରି ଭାଙ୍ଗିପଡ଼ିବ, ସେହିପରି ବୋଧ ହେଲା । ଡାକ୍ତର, ସର୍ଜନ, କମ୍ପାଉଣ୍ଡର ଆଦି ଜଘନ୍ୟ ବିବାହ ଘଟଣା ଘଟିଛି ବୋଲି ଭାବି ଦୌଡ଼ି ଧାଇଁ ଆସିଲେ । ସେହି ରାକ୍ଷସୀ ମୂର୍ତ୍ତି ଦେଖି, ପୁଣି ଭୟଙ୍କର ଗର୍ଜନ ଶୁଣି କେହି ପାଖରେ ପଶିବାକୁ ସାହାସୀ ହେଲେ ନାହିଁ । ଏ ବିକଟ ରୂପ, ତହିଁରେ ଦନ୍ତ-ଘର୍ଷଣ ସହ ପ୍ରଚଣ୍ଡ ରଡ଼ି । ସମସ୍ତେ ଗୃହଅଡ଼ୁ ଗୃହିଁ ଛନ୍ତି । ପଦ୍ମ ଜଳ ଜଳ ଗୃହିଁ ଥାଏ । ରୋଗିଣୀ ଶେଷ ଥର ଅତ୍ୟନ୍ତ ବିକଟ ଗର୍ଜନ କରି ଭୂମି ଉପରେ ତଳେ ପଡ଼ିଗଲା । ମୁଣ୍ଡ ଫାଟି ରକ୍ତ ପିଚ୍ ପିଚ୍ ବହି ଯିବାକୁ ଲାଗିଲା । ସମସ୍ତେ ଦୌଡ଼ି ଆସି ଦେଖିଲେ ସବୁ ଶେଷ ହୋଇ ଯାଇଛି । ଶଶି-ପ୍ରଭାଙ୍କ ପାପମୟ ଜୀବନର ଯାତନା ଲଭି ଯାଇଛି । ଗୋଟାଏ ଅଭିଶପ୍ତ ଜୀବନର ହୋଇଛି ଉତ୍କଟ ଅବସାନ ।

## —କୋଡ଼ିଏ—

ପଥିକଟିଏ ଜଗନ୍ନାଥ ସଡ଼କରେ ପୁରୀ ଅଭିମୁଖରେ ଯାତ୍ରୀ । ସେ ଦିନତମାମ ବାଟ ଚାଲି ଚାଲି କ୍ଳାନ୍ତ ହେବାପରି ବୋଧ ହେଉଛି । ତା'ର ସେତେ କିଛି ପୋଷାକ ପରିଚ୍ଛଦର ଆଡ଼ମ୍ବର ନାହିଁ । ପରିଧାନ ଭିତରେ ଖଣ୍ଡିଏ ଲୁଗା, ଖଣ୍ଡିଏ ଚଦର, ହାତରେ କ୍ଷୁଦ୍ର ଗଣ୍ଠିଲିଟିଏ । ସେ ଏତେ ଅବସନ୍ନ ହେଲେ ମଧ୍ୟ ନୀଳାଚଳନାଥଙ୍କର ଦର୍ଶନସ୍ପୃହା ଯେପରି ତା'ର ପ୍ରାଣରେ ନୂତନ ବଳ ଓ ପ୍ରେରଣା ଆଣି ଦେଉଛି । ସେ କିଛି ଦୂର ଯାଉଛି, ପୁଣି ଟିକିଏ ଗଛମୂଳରେ ବିଶ୍ରାମ ନେଇ ଅଭୀପ୍ସିତ ପଥରେ ଚାଲୁଛି । ଦ୍ୱିପ୍ରହରର ପ୍ରଖର ରୌଦ୍ର କଷ୍ଟ ପ୍ରତି ତା'ର କିଞ୍ଚିତ୍ ଭ୍ରୂକ୍ଷେପ ନାହିଁ । ଠିକ୍ ସୂର୍ଯ୍ୟ ରଡ ରଡ ହେବା ବେଳକୁ ପଥିକ ପୁରୀର ଆଖ ପାଖରେ ପହଞ୍ଚିଲାଣି । ପୁରୀ ଯେତିକି ନିକଟ-ବର୍ତ୍ତୀ ହେଉଛି, ଜଗନ୍ନାଥଙ୍କ ଦର୍ଶନ ଲାଗି ତା'ର ପ୍ରାଣ ସେତିକି ବ୍ୟାକୁଳ ହୋଇ ଉଠୁଛି । ସେ ସେତିକି ଦ୍ରୁତ ପଦବିକ୍ଷେପ କରୁଛି । ଆଉ ମଧ୍ୟ ଦିନର ପଥକ୍ଳାନ୍ତି ଓ ଅବସନ୍ନତା ସନ୍ଧ୍ୟାର ସ୍ନିଗ୍ଧ ଶୀତଳ ଛାୟା ଓ କୋମଳ ମଧୁର ପବନରେ କିଞ୍ଚିତ୍ ଦୂରୀଭୂତ ହୋଇଛି । ଏହି ସମୟରେ ସେହି ବିଜନ ପଲ୍ଲୀ ଅନ୍ତରାଳରୁ ସାନ୍ଧ୍ୟ ପବନ ଖେଳାଇଦେଲା ଗୋଟିଏ ଗୀତ-ଲହରୀର ମଧୁମୟ ମୂର୍ଚ୍ଛନା । ପଥିକର କାନରେ ଯେପରି କିଏ ଅମୃତ ଢାଳିଦେଲା । ଅନେକ ସମୟରେ ଅତି ସାମାନ୍ୟ କଥା ବା ଭାବ ନିଜ ମନର ଭାବ ସଙ୍ଗେ ଖାପ ଖାଇଲେ ବଡ଼ ପ୍ରୀତିକର ବୋଧ ହୁଏ । ପଥିକର ଅନ୍ତଃସ୍ଥଳରେ ଯେପରି ଭାବଟି ସ୍ପର୍ଶ କରିଛି, ସେହିପରି ଅନୁମିତ ହେଲା । ପଥିକ ପୁଣି ଥରେ ସେହି ଗୀତ ମାଧୁରୀ ଉପଲବ୍ଧି କରିବ ବୋଲି ଉତ୍କଣ୍ଠିତ ହୋଇ ରହିଲା । ପୁନର୍ବାର ପଦଟିଏ ପବନରେ ପ୍ରତିଧ୍ୱନିତ ହେଲା ।

"ଜୀବନ ଯୌବନ ଧନ କାହାର ତ ଭାଇ,
ସ୍ଥିର ହୋଇ ଜଗତରେ କେବେ ରହି ନାହିଁ ।"

ପଥିକ ଭାବିଲା, ଏହା ଅନ୍ତର୍ଯ୍ୟାମୀ ନାଥ ଜଗନ୍ନାଥଙ୍କର ଯେପରି ତା'ପ୍ରତି ଅମୂଲ୍ୟ ଉପଦେଶ । ପଥିକ କିଛି କ୍ଷଣ ପର୍ଯ୍ୟନ୍ତ ଅପେକ୍ଷା କରି ରହିଲା ସେହି ଗୀତ ମାଧୁରୀ ଅନୁଭବ କରିବ ବୋଲି । ମାତ୍ର କିଛି ଆଉ ଶୁଣା ଗଲା ନାହିଁ । ପଥିକ ପୁଣି ତା'ର ଅଭୀଷ୍ଟପଥରେ ଚାଲିଲା ପାଠକେ ଚିହ୍ନି ପାରୁଛନ୍ତି, ପଥିକ ପଦ୍ମଚରଣ ବ୍ୟତୀତ ଆଉ କେହି ନୁହେଁ ।

ଉତ୍ଥାନ ପରେ ପତନ ଜଗତର ନିୟମ । ଏହିପରି କେତେ ସୃଷ୍ଟି ଓ ଧ୍ୱଂସର ଲୀଳା ବକ୍ଷରେ ବହନ କରି କାଳ ଚାଲିଛି ତା'ର ଅନନ୍ତ ପଥରେ । କାହା ପ୍ରତି ତା'ର ଭ୍ରୂକ୍ଷେପ ନାହିଁ କି କାହାର ଭଲ ମନ୍ଦ ପ୍ରତି ତା'ର ମାୟାମମତା ନାହିଁ । ଶଶିପ୍ରଭା—ଯେ ଏତେ ବଡ଼ ଜମିଦାରର ଗୃହିଣୀ ଥିଲେ, ଯାହାଙ୍କ ରୂପପ୍ରଭାରେ, ଯୌବନ ଗର୍ବରେ ଭୂଇଁ ଦୋହଲି ଉଠୁଥିଲା, ତାଙ୍କର ପରିଣାମ କି କଦର୍ଯ୍ୟର ? ତାଙ୍କର କି ଶୋଚନୀୟ ମୃତ୍ୟୁ ଘଟିଲା ଜଗତକୁ ମହତ୍ ଶିକ୍ଷା ଦେଇ । ପଦ୍ମ ପୂର୍ଣ୍ଣ ଯୁବକ, ସଂସାର ପ୍ରତି ତା'ର ପୂର୍ଣ୍ଣ ଆକର୍ଷଣୀ ରହିବାର କଥା । ମାତ୍ର ଶଶିପ୍ରଭାଙ୍କ ମୃତ୍ୟୁ ପରଠାରୁ ତା'ର ସ୍ୱାଭାବିକ ଉଦାସୀନ ହୃଦୟ ଆହୁରି ବୈରାଗ୍ୟ ଓ ରୁକ୍ଷତାରେ ପୂରି ଉଠିଛି । ତା'ର ମନ ସଂସାର ପ୍ରତି ବୀତସ୍ପୃହ ହୋଇ-ଯାଇଛି । ତା'ର ମନରେ ନିଜ ମା'ଙ୍କ ସ୍ନେହମୟ ବଚନ, ମଧୁର ଅଦର, ବୀଣାର ସରଳ ଚପଳ କଥା, ଅଳି, ଦୁଷ୍ଟାମି ଯେତିକି ପଡ଼ୁଛି ସେତିକି ତା'ର କୋହ ଜାତ ହେଉଛି । ତା'ର ବାପାଙ୍କର କି ଅବସ୍ଥା ଥିଲା, କ'ଣ ହେଲା । କି ଅଚଳାଚଳ ସମ୍ପତ୍ତି, ସ୍ୱର୍ଗୀୟ ଶାନ୍ତି ସୁଖ । ସବୁ ସ୍ୱପ୍ନ-ପରି କାହିଁଗଲା । ତା'ର ତ ନିଜର ବୋଲି ଗାଁରେ ସ୍ଥାନ ଟିକିଏ ନାହିଁ, ଆହା ବୋଲିବାକୁ ତ କେହି ଜଣେ ନାହିଁ, ସେ କେଉଁ ଆଶାକରି ପୁଣି ସଂସାର ଗଢ଼ିବ ? ସେ ମନେ ମନେ ସ୍ଥିର କଲା ଆଉ ତା'ର ଗୃହ-

ସଂସାର ଗଢ଼ି ଲଭ ନାହିଁ । ଭଙ୍ଗା ଗଢ଼ା ଜଗତର ନିତ୍ୟ ଲୀଳା, ସବୁ ମାୟା, ସବୁ ଭ୍ରାନ୍ତି । ସେ କାହିଁକି ଆଉ ମ୍ରିୟମାଣ ? ସାରା ସଂସାର'ତ ତା'ର ଘର । ଦୃଶ୍ୟମାନ ଜଗତରେ ସ୍ତ୍ରୀ ପୁରୁଷ ଶିଶୁ'ତ ତାର ମା, ବାପ ଭାଇ, ଭଉଣୀ । ଭଗବାନଙ୍କର ଏହି ବଚିତ୍ର ସୃଷ୍ଟି ତା'ର ଅସରନ୍ତି ଭଣ୍ଡାର । ଧନରେ ତା'ର ପ୍ରୟୋଜନ କ'ଣ ? ଯେଉଁଥିରେ ନିତ୍ୟ ଶାନ୍ତି, ନିତ୍ୟ ସୁଖ ମିଳିବ ସେ ତା'ର ଅନ୍ୱେଷଣ କରିବ । ବିଶ୍ୱଜନୀନ ପ୍ରେମ ଲଭ କରି ସେ ପ୍ରକୃତ ମାନବିକତା ଫୁଟାଇବ ।

ସେଥିପାଇଁ ସେ ଶଶିପ୍ରଭାଙ୍କ ମୃତ୍ୟୁ ପରେ ତା'ର କ୍ଷୁଦ୍ର ଦୋକାନ ଖଣ୍ଡି ଭାଙ୍ଗି ଦେଇ ଚାଲିଲା ତୀର୍ଥଯାତ୍ରା ଉଦ୍ଦେଶ୍ୟରେ । ସେଦିନ ପୁରୀ ରାସ୍ତାରେ ଯାଉଥିବା ବେଳେ ସଂସାରବିରାଗୀ ପଦ୍ମ ପ୍ରାଣରେ ଯେତେବେଳେ ଉଦାସ-ସଙ୍ଗୀତର ଗୋଟାଏ ମଧୁମୟ ମୂର୍ଚ୍ଛନା ଖେଳିଗଲା, ସେ ସଂସାର ପ୍ରତି ଆହୁରି ବୀତସ୍ପୃହ ହୋଇ ପଡ଼ିଲା । ସେ ପୁରୀରେ କେତେଦିନ ରହିଲା, ତାର ଠିକ୍ ବିବରଣୀ କେହି ଦେଇ ପାରିବ ନାହିଁ । ଶୁଣାଯାଏ ସେ କିଛିଦିନ ପରେ ବିସୂଚିକା ରୋଗରେ ସେହି ପୁରୀ ଧାମରେ ପ୍ରାଣତ୍ୟାଗ କଲା । ଏବେ କୌଣସି ବ୍ୟକ୍ତି ସୁବର୍ଣ୍ଣପୁର ଗାଁକୁ ଯାଇଁ ଦେଖିଲେ ଏ ଜମିଦାର ଗୃହର ଚିହ୍ନ ସୁଦ୍ଧା ପାଇବ ନାହିଁ । କୌଣସି ସୁବର୍ଣ୍ଣପୁରବାସୀ ମଧ୍ୟ ଏହି ଅତୀତବାର୍ତ୍ତା କହି ପାରିବ ନାହିଁ । କେବଳ ବିଶାଳାଙ୍ଗୀ ମହାନଦୀ କଳ କଳ ଧ୍ୱନି ଛଳରେ ଉତ୍ତର ଦେଇ 'ଧ୍ୱଂସ-ପଥେ ।'



କଟକ ଅମ୍ବିକା ପ୍ରେସରେ ଶ୍ରୀ ଚନ୍ଦ୍ରଶେଖର ମିଶ୍ର ବି. ଏ. ଙ୍କ ଦ୍ୱାରା ମୁଦ୍ରିତ ।

— ୧୯୩୯ —

